# ପଦ୍ମପାଖୁଡ଼ା

ଶ୍ରୀ ପଦ୍ମଚରଣ ପଟ୍ଟନାୟକ ବି. ଏଲ୍,

ପ୍ରକାଶକ—

ଶ୍ରୀ ଉମାଚରଣ ମହାନ୍ତି

ପ୍ରୋପ୍ରାଇଟର, କଟକ ପବ୍ଲିଶିଂ ହାଉସ୍

ନୟାସଡ଼କ, ପୋଃ ଅଃ ଗୃଦ୍ଧମାଚୌକ

କଠକ ।

ମୂଲ୍ୟ ଦଶ ଅଣା

# ପ୍ରଥମ ସଂସ୍କରଣର ଭୂମିକା



ଗତ ୨୦ ବର୍ଷ ଭିତରେ ଲେଖା କବିତାଗୁଡ଼ିକ ମଧ୍ୟରୁ କେତୋଟି ଆଜ 'ସାହିତ୍ୟ-ପ୍ରଚାର-ସଂଘ'ର ଅନୁକୂଲ୍ୟରୁ ପୁସ୍ତକାକାରରେ ପ୍ରକାଶିତ ହେଲା । ଏ ସମସ୍ତ 'ଉତ୍କଳ ସାହିତ୍ୟ'ରେ ସ୍ଥାନ ପାଇଥିଲେ କହିଲେ ଯଥେଷ୍ଟ ହେବ ନାହିଁ; 'ସାହିତ୍ୟ'ର ଶ୍ରଦ୍ଧେୟ ସମ୍ପାଦକଙ୍କ ସସ୍ନେହ ପୁଣ୍ୟ ପ୍ରବର୍ତ୍ତନାରେ ସେଗୁଡ଼ିକ ଜନ୍ମଲାଭ ଲଭି ଲୋକଲୋଚନକୁ ଆସିଅଛି । ସେ ଋଣ ଅପରିଶୋଧନୀୟ—ସେ ଋଣର ବନ୍ଧନରୁ ମୁକ୍ତିଲାଭ କିମ୍ବା ଆଜ ଉଦ୍‌ଯାପନ କରିବା ଅସଙ୍ଗତ ଓ ଅସମ୍ଭବ । ମୋ ଉପରେ ଆଉ ଗୋଟିଏ ଋଣଭାର ସହୃଦୟ ପାଠକପାଠିକାମାନଙ୍କର । ସେମାନଙ୍କ ସ୍ନେହ ସହାନୁଭୂତିରେ ମୋର କବିତାଗୁଡ଼ିକ ପୁଷ୍ଟ । ଆଶା କରେଁ, ସମୟର ବ୍ୟବଧାନ ସେମାନଙ୍କ ସ୍ନେହର ବନ୍ଧନକୁ ଶିଥିଳ କରି ନାହିଁ । ଇତି ।

ପୁରୀ
ଶ୍ରୀଗୁଣ୍ଡିଚା,
୧୩୩୪ ସାଲ ।

ଶ୍ରୀ ପଦ୍ମଚରଣ ପଟ୍ଟନାୟକ

# ଦ୍ୱିତୀୟ ସଂସ୍କରଣର ଭୂମିକା



୮ ବର୍ଷ ପରେ 'ପଦ୍ମପାଖୁଡ଼ା'ର ୨ୟ ସଂସ୍କରଣ ବାହାର କରିବାର ଅବଶ୍ୟକ ହେଲା । ଏଥି ମଧ୍ୟରେ ବିଭିନ୍ନ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷମାନେ ଏହାକୁ ସ୍କୁଲ୍ ଓ କଲେଜର ପାଠ୍ୟପୁସ୍ତକରୂପେ ନିର୍ବାଚନ କରି ଦେଶର ଯୁବକମାନଙ୍କ ହାତରେ ଏହାକୁ ବହୁଳ ପରିମାଣରେ ଦେବାର ସୁଯୋଗ ଦେଇଥିବାରୁ ଗ୍ରନ୍ଥକାର ସେମାନଙ୍କ ନିକଟରେ କୃତଜ୍ଞ । ନବପ୍ରତିଷ୍ଠିତ ଉତ୍କଳ ପବ୍ଲିଶିଙ୍ଗ୍ ହାଉସ୍ ଏ ପୁସ୍ତକର ୨ୟ ସଂସ୍କରଣର ପ୍ରକାଶକ ହେଲେ । ଆଶା ହୁଏ, 'ପଦ୍ମପାଖୁଡ଼ା' ଦେଶର ତରୁଣ ପ୍ରାଣରେ ଆନନ୍ଦ ଉତ୍ସାହ ଭରିବାରେ କଥଞ୍ଚିତ୍ ସାହାଯ୍ୟ କରି ନିଜର ଉଦ୍ଦେଶ୍ୟ ସାଧନ କରିବ । ଇତି ।

ପୁରୀ,
୨।୧।୧୯୩୬

ଗ୍ରନ୍ଥକାର



ମୁଦ୍ରିତ ପଦ୍ମକଳି ଫୁଟାଇଛ
ରଞ୍ଜନ କରସ୍ପର୍ଶେ,
ଅପେ ତୁଳୀ ଧରି ରଙ୍ଗ ଢାଳିଛ
ଭରିଛ ଅନ୍ତରେ ହର୍ଷେ,
କେତେ ଜନମର କେତେ ସ୍ୱପନର
ବନ୍ଧନେ ଦେଇଛ ବାଣୀ,
ଭ୍ରମର ଫୁଲର ପାଖୁଡ଼ା ଧରିଛି
ଆଣିଛୁ ଜୀବନରାଣୀ ।

ମନେ ରଖିବଟି ଶେଷ ପାଖୁଡ଼ାଟି
ପଡ଼ିବ ଯେକାଳେ ଝଡ଼ ?
ଏହି ସ୍ନେହସୁଧା ସୌରଭଟିକି
ଦେବ ତ ସେକାଳେ ଭରି ?
ଅଳି ଝଙ୍କାପଢ଼ କେହି ବା ଆସିବେ
ସରବ ସୁଷମା ମଧୁ,
ରୂପ ରସ ଘ୍ରାଣ ଜୀବନେ ସଞ୍ଚିବ
ଫୁଲପାଣି ପ୍ରାଣବନ୍ଧୁ ।

* * *

ଅଙ୍ଗାର ସୌରଭ    ସୁରଭି ଗୌରବ
ହୋଇଯିବ ଗତ କଥା,
ଧନ୍ୟ ରଶ୍ମିରୁ    କୁସୁମ-ଚମ୍ପା
ଝାଡ଼ିବ ଝରଣ-ବ୍ୟଥା
ଅଙ୍ଗୁଳି ବୁଲାଇ    ଚମ୍ପାର ପ୍ରାଣରେ
ଆଣି ଦେବ ସୁଖ ଶାନ୍ତି,
ବାରେ ସ୍ନେହଶେଷ    ଜୀବନ ବନ୍ଧନେ
ହରିବ ଅନ୍ତିମ କ୍ଳାନ୍ତି ।

* * *

ଅଛୁ କି ସୁହୃଦ    ହେବୁ ପୁଣି ସାଥୀ
ସେ ପାରର ନବ ଗ୍ରାମେ !
ଖୋଜି ପାରୁ ନାହିଁ    ସେ ରାଜ୍ୟ ଖବର
ଏ ଗନ୍ଧର୍ବ ଧରାଧାମେ ।
ଛେଡେ କି ଚୌଦିକେ    ମରମେ ମରମେ
ବାନ୍ଧି ଅଛୁ ନାନା ପାଶ
ଶେଷ ରେଣୁ କଣା    ଛାଡ଼ି ପୁଣେ ସଙ୍ଗ
ନ ଲଭିବ କି ଧରା ବାସ ?

* *
*

# ଅଶ୍ରୁଧାରା

ହେ ଶ୍ରୀକୃଷ୍ଣ!

ଦୀନ ହୀନ ମୋର, ନିର୍ଜନ କୋଣରେ
ଲାଗି ନ ଯିବାରୁ ମନ,
ତେଜି ସେହୁ ପଥ ତୁମ୍ଭ ପାଦପଦ୍ମେ
ବିକି ଦେଲି ଏ ଜୀବନ ।

ଦାସତ୍ୱରେଁ ଆଶା କେବେ ତ ନ ଥିଲା
ନିଜେ ନିଜେ ହେଲି ଦାସ,
ଉପହାର ସ୍ଥଳୀ ବହି ଆସିଛି
ତୁମ୍ଭ କୋଳାହଳ ପାଶ ।

ତୁମ୍ଭ ଧୂଳିଘଟରେ କରିବି ତପସ୍ୟା
ରକ୍ତାକ୍ତ ଶଙ୍ଖିନୀ ଯୋଗ,
ହସିବି କାନ୍ଦିବି ତୁମ୍ଭ ଦତ୍ତ ଧର୍ମେ
ହେବ ମୋର ରାଜଯୋଗ;

ସଖା ସଖୀ ସେନ ଲତାକୁଞ୍ଜେ ବସି
ଖେଳିବି ମୁଁ ମୋର ଦୋଳି,
ବନେ ଉପବନେ ବୁଲିବି ବଦନେ
କୁସୁମ-ପରାଗ ବୋଳି;

ବାହୁର ବନ୍ଧନେ ଆଖିର ମିଳନେ
ପିଇବି ଯୌବନ-ସୁଧା
ପ୍ରକୃତ ଧରଣେ ପରାଣ ମିଶାଇ
ମେଣ୍ଟିବି ପରାଣ କ୍ଷୁଧା;

ପିତା ମାତା ବନ୍ଧୁ ଭାଇ ଭଉଣୀଙ୍କ
ଲଭିବ ସ୍ନେହାରେ ମେଳ,
ଅତିଥିଏ ଆସି ଆନନ୍ଦେ ଭୁଞ୍ଜିବ
ଅନ୍ନ ଯାଉ ଯାଉ ବେଳ;

ଦୁଃଖୀ ଭିକା ଶୋଷୀ ଯେତେ ଜୀବଜନ୍ତୁ
ହେବେ ମୋ ପରାଣବନ୍ଧୁ,
ସେମାନେ ହସିବେ ମୋ ଲାଗି କାନ୍ଦିବେ
ଆକାଶେ ତପନ ଇନ୍ଦୁ;

ଗଗନର ତାରା ଜାଳିବ ମୋ ଦୀପ
ମେଘ ଦେବ ସ୍ନାନ ଜଳ,
କେବେ ରାମ ମାଳା କେବେ ଇନ୍ଦ୍ରଧନୁ
ଦେବେ ମୋର ହରିବୋଲ;

ମୋର କଣ୍ଠସ୍ୱରେ କଣ୍ଠ ମିଶାଇବେ
ପଶୁ ପକ୍ଷୀ ଯେତେ ଭବେ,
ମୋର କ୍ଷୁଦ୍ର ରୂପ ଅନନ୍ତ ରୂପରେ
ଏକାକାର ହେବ ଲଭେ ।

ଅନନ୍ତ ପ୍ରକୃତ ରନ୍ଧ୍ରେ ରନ୍ଧ୍ରେ ମିଶି
ହେବ ମୁହିଁ ମହାଦାର,
ସ୍ଥାବର ଜଙ୍ଗମ ସର୍ବ ପ୍ରାଣେ ମୁହିଁ
ନିବିଡ଼ିବ ମୋର ବିସ୍ତାର ।

ବଡ଼ ଅବା ସାନ ଯେତେ ମୋର ରୂପ
ଆଉ ନ ପଡ଼ିବ ଜଣା,
ତୁମ୍ଭର ଚରଣ ନୂପୁର ଧ୍ୱନିରେ
ହେବ ମୁହିଁ ପଥବଣା ।

ସେହି ପଥଭ୍ରମେ ଭୁଞ୍ଜିବ ଜୀବନେ
ଜୀବନମରଣ ଦ୍ୱନ୍ଦ୍ୱ,
କେବେ ରୋଗ ଦୁଃଖ କେବେ ଆନନ୍ଦର
ଅନନ୍ତ ଯୌବନ ଭୋଗ

କେବେ ଶ୍ଳାଘ୍ୟ ଚର୍ମ କେବେ ଅସି ବର୍ମ
କେବେ ପ୍ରଭାସ୍ୱୀ ଦୁର୍ବଳ,
କେବେ ଦେଖୁଥିବ ଉତ୍ତୁଙ୍ଗ ଶିଖର
କେବେ ଅତଳ ସାଗର

ଚନ୍ଦ୍ର ସୂର୍ଯ୍ୟଙ୍କର ସଙ୍ଗୀତ ସୁସ୍ୱରେ
ଦେବ ମୋର ଗୀତ ତାଳ,
ଗ୍ରହ ଉପଗ୍ରହ କାନ୍ତର କାନ୍ତରୁ
ଦେଉଥିବେ କରତାଳି ।

ବକ୍ଷେ କର ମାରି କକ୍ଷେ କକ୍ଷେ ବୁଲି
ଉଠାଇବ ଉଚ୍ଚ ତାନ,
ହେ ବିଶ୍ୱ ! ତୁମ୍ଭର ଆନନ୍ଦ-ରାଜ୍ୟରେ
ଗାଉଛି ଆନନ୍ଦ ଗାନ ।

ନାଚ ଗୀତ ଗାଇ ତୁମ୍ଭର ଧୂଳିରେ
ପଡ଼ିବ ଆନନ୍ଦେ ଢଳି,
କାହିଁ ଟୁକଛେ କାଲେ ଦେଖିବି ବାଟୋଇ
ହସୁଛି କୁସୁମକଳି ।



# ଚିରସୁନ୍ଦର

୧

ନୁହ ତୁମ୍ଭେ ପଲକର ପରାଣର ଦ୍ରୋହ ଗୋ,
ନୁହ ତୁମ୍ଭେ କ୍ଷଣିକର ଉନ୍ମାଦନା ମୋହ ଗୋ ।

ନୁହ ତୁମ୍ଭେ ବସନ୍ତର ମୋହନ ବିଳାସ,
ନୁହ ତୁମ୍ଭେ ନନ୍ଦନର ମଳୟ ନିଶ୍ୱାସ,
ନୁହ ତ ଶ୍ରାବଣ ଘନେ ଚପଳାର ସର,
ଶାରଦ ଚନ୍ଦ୍ରକରଧୌତ ଗଗନର ପର,
ଫୁଲର ସୌରଭ ନୁହ ସଙ୍ଗୀତର ତାନ,
ଝର୍ଣ୍ଣାର ସ୍ୱନ ନୁହ ଯୌବନର ପ୍ରାଣ,
କୁସୁମ ବନ୍ଧନ ନୁହ ଊଷାର ଅଲୋକ,
ଦନଙ୍କର ମାୟା ନୁହ ନୟନ ପୁଲକ,
ନୁହ ତ ସୌନ୍ଦର୍ଯ୍ୟମୟୀ ମୃଣ୍ମୟୀ ପ୍ରତିମା,
କାଳେ କାଳେ ନ ରାଜବ ତୁମ୍ଭର ମହିମା
ଇନ୍ଦ୍ରିୟର ରୂପତୃଷ୍ଣା ପରାଜୟ କରି
ଅମର ସୌନ୍ଦର୍ଯ୍ୟେ ରାଜ ହେ ଚିରସୁନ୍ଦର ।

୨

ସିନ୍ଧୁ-ନୀର କ୍ଷୁଦ୍ର ରାଜ୍ୟ ଲଙ୍ଘି କୁତୁହଳେ
ଆନନ୍ଦେ ବିହର ଅପେ ମାନବ ଅନ୍ତରେ,
ବିଧି ସୃଷ୍ଟି ଶିଳ୍ପକଳା ପୁରୁଷର ପୂଜା
ପାଇ ବଢ଼ ଦିନେ ଦିନେ ସୌନ୍ଦର୍ଯ୍ୟତନୁଜା,
ମାନବ ଅନ୍ତରେ ରାଜ୍ଞୀ ହୁଅ ବିଶ୍ୱମୟୀ,
ଭାଳ ହେ ଅମିୟ କେବେ ଘଟାଅ ପ୍ରଳୟ,
ପ୍ରଳୟଜଳଧିଜଳେ ପଦ୍ମରୂପ ଧରି
ଅଭୟ ଆଶ୍ୱାସସୁଧା ଦିଅ ବିଶ୍ୱ ଭରି ।
ବାହୁର ବନ୍ଧନପାଶ ନୟନମିଳନେ
କି ଅପୂର୍ବ ଲୀଳା ଆଣି ଜଗତ ଜୀବନେ !
ଶୋଭାର ଶାନ୍ତିର ଦ୍ୱାର ଦିଅ ହେ ଫିଟାଇ,
ଜଗତେ ଜଗତଲକ୍ଷ୍ମୀ ଆସ ହେ ବିଦାଇ ।
କେତେ କବି କେତେ ଶିଳ୍ପୀ କେତେ ଚିତ୍ରକାର
ପଦତଳେ ଭକ୍ତି ଦେଇ ପୂଜାର ସମ୍ଭାର ।

# ନାଉରୀ—ଗୀତ

ବୈତରଣୀର ପୂର୍ଣ୍ଣ ତୀରେ ଶୂନ୍ୟ ତରୀ ଧରି
ବସିଅଛି, ଆସ ଗୋ କେହ୍ନ କରି ଦିଏଁ ପାରି;
ନୌକା ନୁହେ ପୁରାତନ,
ହାତେ ମୋର ଅଛି ଝାଣ,
ଦିଗ ବାରି ଅହ୍ଲ କାଠ ଜାଣେ ମୁହିଁ ମାରି,
ଭୟ ନାହିଁ ଆସ ଆସ କରି ଦେବି ପାରି ।

ସାତ ବରଷରୁ ଆସି ହେଲଣି ସତର,
ପିଲାଦିନୁ ଏ ନଈଟା ମୋର ଖେଳଘର,
ନିତି ନିତି କାତ ମାରି
କେତେ ଲୋକ କରେ ପାରି,
ମାଛଧରା କାତମରା ବେବସା ମୋହର,
ବାପ ଅଜାଙ୍କର ଗଲା ଏଥିରେ ଜୀବର ।

ଦେଖୁ ଦେଖୁ ସରିଲାଣି ଦିନକର ବେଳ,
ସୂର୍ଯ୍ୟଦେବ ଅଣିଲେଣି ଅସ୍ତଗିରି ଚୂଳ,
ଘରେ ପକ୍ଷୀ ଯାଏ ଉଡ଼ି,
ଗୋଠେ ଧେନୁ ଯାନ୍ତି ରଡ଼ି,
ଘରଜେ ଶ୍ରାବଣ ମେଘ ଅନ୍ଧାରିବ ଜାଳ,
ଆସ ଆସ ପାରି କରେଁ ନ କର ଡେରିର ।

ପାରି ହୋଇ କେତେ ଦୂରେ ଘରେ ଯିବ ଚାଲି,
କିବା କଥା ଲାଗି ଏତେ ହେଉଅଛ ଭାଳି,
କାହିଁ ପାଇଁ ଯାଅ ଡରି,
କିବା ଭୟେ ଯାଅ ଥରି ?
ଆସ ଆସ ବେଗେ ମୁହିଁ କରିଦିଏଁ ପାରି,
ଚାହୁଁ ଚାହୁଁ ଅନ୍ଧାରଟା ଆସିଲାଣି ମାଡ଼ି ।

ବାଟେ କେତେ ତୋହା ପାଠ ଡେଇଁ ଯିବ ଘରେ
ଗାଆଁ ମୁଣ୍ଡ ମଶାଣିଟା ଏଇ ଖଣ୍ଡ ଦୂରେ;
ଆସ ଆସ କରେଁ ପାରି,
କାହା ଘର କୁଳନାରୀ
କାହୁଁ ଆସି କାହିଁ ଅବା ଏକା ଯାଅ ଚାଲି ?
ପଲଟିଏ ନ ଅଣିଣ ଆସିଛ ବାହାରି !

ହାଟେ ଯାଇଥିଲ ଯେବେ ହାଟସଜ କାହିଁ ?
ହାଟୁଆଙ୍କୁ ପାର୍ କଲ୍ କେତେ ଦିନୁ ଥାଇ ।
    କାହିଁ ଥିଲ୍ ଏକା ବସି
    ହାଟୁଅଧିର ରୁଷି,
କବା ଭଳି ଜଳଜଳ ଅଛ ମୋତେ ଚାହିଁ !
କହ ମୋତେ ସେ ପାରକୁ ଯିବ ଅବା ନାହିଁ ?

ଏତେବେଳେ ଯିବାପାଇଁ ମାଡ଼େ ଯେବେ ଡର,
ଏଇ ଦେଖ ପାଖେ ମୋର ଦିଶୁଅଛି ଘର,
    ଚାଲ ଆଜ ରହ ତହିଁ,
    ମାଆ ମୋତେ ଥିବ ଚାହିଁ,
ଦୁଃଖେ ସୁଖେ ଜଳପାନେ ତୋଷିବ ଅନ୍ତର,
କାଲ୍ କାଅ-ଡାକୁ କାଲ୍ କରିଦେବ ପାର ।

ମୋ ଘରକୁ ଯିବା ଲାଗି ନାହିଁ ଯେବେ ମନ,
ସାଆନ୍ତଙ୍କ ଉଆସକୁ ନେବି ମୁଁ ବହନ,
    ଭାଗବତଘରେ ବସି
    ପ୍ରସାଦରେ ମନ ତୋଷି
ମଣ୍ଡପରେ ପିଣ୍ଡାରେ ବା କରିବ ଶୟନ,
ବାଟୋଇଙ୍କ ପାଇଁ ତହିଁ ସବୁ ଆୟୋଜନ ।

କିବା କାମ ଅଛୁ ମୋର ସାଆନ୍ତଙ୍କ ଘରେ !
କାହ୍ନ ପରି ତମ ଘର ଏଇ ନିକଟରେ ?
ଚାଲ୍ ତେବେ ନିଅ ତହିଁ,
ରାତିଟାଏ ଯାଏଁ ରହି,
ଭଲ ଯୋଗେ ଭେଟ ହେଲା ତୁମ୍ଭ ସଙ୍ଗତରେ,
ସତ ପାଉ ପାଉ ମତେ ପାରି କର ଖରେ ।



# ଧଉଳି ପାହାଡ଼

୧

ଧଉଳି ପାହାଡ଼, ଧଉଳି ପାହାଡ଼,
କାହିଁକି ମଉନେ ରହିଛ ଆଜ,
ଦଇଆ ବାଲିରେ କେତେ ଖୋଜୁଥିବ
ଅତୀତ ଗୌରବ-ଗରବରାଜି !

ଧଉଳି ପାହାଡ଼, ଧଉଳି ପାହାଡ଼,
ରୁକ୍ଷ ମୁଖ ଦୁଃଖେ ଗୁଳ୍ମେ ଆବରି
ତପସ୍ୱୀ ପରାଏ ବସି ରହିଅଛ
କି ଭାବନା ଭାବି ଦିବା ଶର୍ବରୀ ।

ଧଉଳି ପାହାଡ଼, ଧଉଳି ପାହାଡ଼,
ଲଜ୍ଜା ଦୁଃଖ ତେଜି ଟେକ ହେ ମଥା,
ଶୁଣାଅ ସେ କାଳ ଗୌରବକାହାଣୀ,
କହ ହେ ସେ କାଳ ଗରବ କଥା ।

ଧଉଳି ପାହାଡ଼, ଧଉଳି ପାହାଡ଼,
ଅଶୋକ ରାଜନ ରହିଲେ କାହିଁ ?
କାହିଁ ସେହି ଧର୍ମ କାହିଁ ବା ସେ କର୍ମ
ଥିଲେ କି ଏ କାଳେ ମିଳିବ ନାହିଁ !

୨

ଧଉଳି ପାହାଡ଼, ଧଉଳି ପାହାଡ଼,
ଶୋଭେ ତବ ଶିରେ ଗୌରବଟୀକା,
ଗୁରୁ ପରି ନିଜେ ନୃପତିଗଣଙ୍କୁ
ଶିଖାଇଛ ଧର୍ମ ଦେଇଛ ଦୀକ୍ଷା ।

କଳ୍ପନାରେ ପ୍ରତେ ହୁଏ କାଲି ପରି
ଆସିଲେ ଉତ୍ତରୁ ସହସ୍ର ବୀର,
ରଣମଦେ ସର୍ବେ ଶ୍ୱାପଦ ସମାନ
ଜାଣନ୍ତି କପର କାଟିବେ ଶିର,

ଯହିଁ ବାଟ କାଟି ଆସିଲେ ବହନ୍ତ
ରକ୍ତସ୍ରୋତ ଆଗେ ସଙ୍କେତ ପରି,
ଯହିଁ ଗଲେ ତହିଁ ଖୋଜିଲେ କପର
ଅସିମୁନେ ବେଗେ ନାଶିବେ ଅରି,

ପିଇ ପିଇ ରକ୍ତ ତୃଷା ନ ମେଣ୍ଟିଲା,
ମହାନଦୀ-ତୀରେ ପଶିଲେ ଆସି,
ପରଶିଲା କ୍ଷଣି ମହାନଦୀ ଜଳ
କରୁଁ କରବାଳ ପଡ଼ିଲା ଖସି ।

## ଧଉଳି ପାହାଡ଼

ଥର ଥର କରି ତନୁ ଥର ଅସି
ଧରିଲେ ଖସିଲା ଭୂତଳେ ଖଡ଼୍ଗ,
ଏ କି ଅଦ୍‌ଭୁତ କଥା ଭାବି ଭାବି
ଚକିତେ ସମ୍ମୁଖେ ଚାହିଁଲେ ବୀରେ,

ପର୍ବତ ପ୍ରମାଣେ ଦାଉ ଦାଉ ହୋଇ
ଦୂରରେ ଦିଶିଲା ରକ୍ତ ଅନଳ,
ମନେ ମନେ ବୀରେ ପ୍ରମାଦ ଗଣିଲେ
ଜାଣିଲେ ଏ ଥର ସରିଲା ବଳ ।

କର ଯୋଡ଼ି ବୀରେ ନୃପତି ସମ୍ମୁଖେ
ଜଣାଇଲେ, 'ନାଥ ନ ଯିବା ଆଉ,
ଦେବଲୀଳାଭୂମି ଏ କଳିଙ୍ଗ ଭୂମି,
ବୋଲୁଛନ୍ତି ଲୋକେ ଏ ଦେଶ ଥାଉ ।'

ଦର୍ପେ ପଶୁପରି ଭାଷିଲେ ନୃପତି,
'କାହିଁ କେଉଁଠାରେ ନାହିଁ ଦେବତା,
ଦେବତାର ଭୟ ଭୀରୁର ସଂମ୍ବଳ,
ହୀନ ଦୁର୍ବଳର ପ୍ରାଣର କଥା,

ଅସି ମୋ ଦେବତା ସବୁ ସାଧିବାକୁ
ଏଥିରୁ ବା ବଡ଼ କି ଅଛି ଆଉ ?
ଶୁଣିଛି କଳିଙ୍ଗ ବୀରଭୂମି ବୋଲି
ଜିଣିବି ଗଲେ ମୋ ଜୀବନ ଯାଉ ।

ଉଠ ଉଠ ବୀରେ, ତେଜ ହେ ବିଷାଦ,
ହେଜ ହେ ଅତୀତ ଗୌରବ କଥା,
କେତେ କଉଶଳେ ଜିଣିଛୁ ଯେ ଦେଶ
କରିବା କଳଙ୍କ ସେ ଦେଶ ମଥା ।'

ଶିରସାହସିକ କଳିଙ୍ଗତନୟେ
ହସି ଶତ୍ରୁ ସଙ୍ଗେ କଷିଲେ ବଳ;
କେତେ କାହିଁ ଶିର ପଡ଼ି ଗଡ଼ିଗଲେ
ଅରୁଣ ଦଶିଲା ଦୟିଆ ଜଳ,

ବିଜୟ ଉଲ୍ଲାସେ ଅଶୋକ ରାଜନ
ଗଣୁଥିଲେ ବସି ଶତ୍ରୁଙ୍କ ମଥା,
ଧଉଳି ପାହାଡ଼, ତୁନି ତୁନି କରି
କିବା ତାଙ୍କ କାନେ କହିଲୁ କଥା !

୩

ଧଉଳି ପାହାଡ଼, ଧଉଳି ପାହାଡ଼,
କି କଥା କହିଲୁ ରାଜାଙ୍କ କାନେ !
କି ଗାଥା ଗାଇଲୁ, ଘଡ଼ିକେ ରାଜନ
ବୁଡ଼ିଲେ ଅପୂର୍ବ ସମାଧି ଧ୍ୟାନେ ।

ରଣୋନ୍ମାଦେ ମାତି ବିଜୟ ଉଲ୍ଲାସେ
ଗଡ଼ୁଥିଲେ ତବ ଚରଣତଳେ,
ଗଡ଼ୁଥିଲେ କେତେ ଅଶାର ସଉଧ,
କାହିଁକି ଭାସିଲେ ନୟନଜଳେ ?

ଧ୍ୟାନଭଙ୍ଗେ କ୍ଷଣେ ଗୃହିଁଲେ ଚକିତେ
ତବ ଶିରେ, ପୁଣି ପୋଡ଼ିଗଲ ମଥା,
'କି କଲି ! କି କଲି !' କହିଲେ ବିକଳେ
ଲଭିଲେ ତା ପ୍ରାଣେ ଦାରୁଣ ବ୍ୟଥା;

'କି କଲି, କି କଲି, କାହିଁ ଆସି କାହିଁ
ପଶିଲି କି ଘୋର ଜିଗୀଷା-ଜାଲେ !
'କିବା କଥା ଲାଗି ଏସବୁ ବହିଲି,
ଲେଖିଲି କି ବହି ଏ ଦେଶୀ ଭାଲେ !

'ଶୋଣିତର ସ୍ରୋତ ନିଜେ ବୁହାଇଲି,
କେସନ ଏ ଶୋକ ନିଭିବ ମୋର,
'ଅଗେ ଅଗେ ମୋର ଜଳାଇ ବସିଲି
ଜୀବନାଶୀ ଚିତା ଭୀଷଣ ଘୋର !

'କେତେ ପ୍ରାଣୀ ନିଜେ ନାଶିଲି ଏ କରେ
କେତେ ଦେଶ କଲି ଶ୍ମଶାନମୟ,
'କେତେ ସୁଖସୌଧେ ଜାଳିଛି ଅନଳ
କେତେ ପ୍ରାଣେ ମୁହିଁ ଅଣିଛି ଭୟ !

'କିଂପିପାସା ଘେନି ଲଭିଲି ଜନମ,
କାଳେ କାଳେ ତାର କି ହେଲା ଶାନ୍ତି,
'ସାରା ଜୀବନଟା ଅବୋଧେ ବସିଲି
କି ଅସାର ଆଶା ମଧୁର ଭ୍ରାନ୍ତି !

ଲୁବ୍ଧ ମୃଗ ପରି ମୁଗ୍ଧ ହୋଇ ମୁହିଁ
ଇନ୍ଦ୍ରିୟର ସୁଖେ କାଟିଲି କାଳ,
'ଜ୍ୱଳନ୍ତ ଅନଳେ ଇନ୍ଧନ ଯୋଗାଇ
ପାପେ ପୂର୍ଣ୍ଣ କଲି ଏହି ସଂସାର !

'ଧୂମକେତୁ ପରି ଭୀମ ପୁଚ୍ଛ ଧରି
ବୁଣିଲି ମଣ୍ଡଳେ ଯାତନାରାଜି,
'ଶୋକ ଅଶ୍ରୁ-ରକ୍ତସ୍ରୋତେ ଭାସି ଭାସି
ଏ ଗିରି ଚରଣେ ଅସିଛୁ ଆଜି !

'ଏ ଗିରି ଚରଣେ ଏହି ନଦୀକୂଳେ
ଲଭିଲିଣି ଆଜି ପରମ ଶିକ୍ଷା,
'ଏ କଳିଙ୍ଗ ଦେଶ ହେଲେ ମୋର ଗୁରୁ
ଦେଲେ ଏଥି ମୋ ଜୀବନ ଦୀକ୍ଷା !

'ଏହି ଦେଶେ ବସି ଏହି ନଦୀକୂଳେ
ଫେରାଇବି ମୋର ଜୀବନଗତି,
'ସାକ୍ଷୀ ରହ ମୋର ସର୍ବ ଦିଗପାଳ,
ସାକ୍ଷୀ ରହ ମୋର ଜୀବନପତି !

'ଶୁଭଯୋଗେ ସତେ କଳିଙ୍ଗବିଜୟେ
ବଳିଲା ମୋ ମନ ଟଳିଲା ବଳ,
'ଦେବଦେଶେ ଆସି ଦେବ ଅନୁଗ୍ରହେ
ଭୋଗିଲି ଏ କେଉଁ ତପସ୍ୟାଫଳ !

'ଏହି ତପଫଳ ଏହି ଧର୍ମବଳ
ଜୀବନର ମୋର ହେଉ ଭୂଷଣ,
'ସେହି ବଳେ ପ୍ରଭୁ ଘୁଞ୍ଚାଇଦଅ ହେ
ଲକ୍ଷ ଲକ୍ଷ ପ୍ରାଣୀ ପ୍ରାଣ କଷଣ ।'

୪

ପ୍ରିୟ ପ୍ରତିବେଶୀ ଧଉଳି ପାହାଡ଼,
ତୁମ୍ଭ ମୁଖ ମୁହିଁ ଦେଖୁଛି ନିତି,
ଗୌରବଶିଖରେ ଅନାଇ ଅନାଇ
କେତେ ଦିନ ମୋର ଯାଇଛି ବିତି ।

ସୁନ୍ଦର ମଧୁର ଗୋଧୂଳି-ଗଗନେ
ଦିନ କାମ ସାରି ଦିବସପତି
ସିନ୍ଦୂରଲହରୀ ଖେଳାଇ ପଶ୍ଚିମେ
ଅସ୍ତାଚଳେ ବେଗେ କରନ୍ତି ଗତି;

ଗୋପାଳ କୃଷକ ସଙ୍ଗେ ଧେନୁପଲ
ଅବେଗହୃଦୟେ ଫେରନ୍ତି ଘରେ,
ତିମିର-ବସନେ ଆବରି ଶ୍ରୀଅଙ୍ଗ
ସନ୍ଧ୍ୟାଦେବୀ ବଣେ ଆସନ୍ତି ଖରେ;

ମୁହିଁ ବସିଥାଏଁ ଧଉଳି ପାହାଡ଼,
ତବ ଶିରେ ଶୁଣେ ବିହଙ୍ଗଗୀତ,
କାନେ ବାଜିଯାଏ କେତେ ଯୁଗ ବାଣୀ,
ବହିଯାଏ ପ୍ରାଣେ ଅନନ୍ତ ପ୍ରୀତି:

ଗୁଲିଯାଏ ଆଗେ ଚକ୍ଷୁ ଝଲସାଇ
ପୁଣ୍ୟ ମହିମାର ଅକ୍ଷୟ ଛବି,
ବ୍ୟାକୁଳ ପରାଣେ ଅନାଇ ଦେଖଇଁ
ବୁଡ଼ିଗଲେ ଧୀରେ ପ୍ରଦୀପ୍ତ ରବି ।

ଏହିପରି ସିନା କଳିଙ୍ଗ ତପନ
ବୁଡ଼ିଗଲେ ଦିନେ ଦରିଆ ତୀରେ,
ଏହିପରି ସିନା କଳିଙ୍ଗ ବୀରତ୍ୱ
ଭାସିଗଲା କାଳ-ସାଗର-ନୀରେ ।

କେତେ କି ମହିମା କେତେ ଦୟା କ୍ଷମା
ଦରିଆ ଗରଭେ ଯାଇଛି ପଶି !
ସାକ୍ଷୀ ତାର ପାଶେ ଦେବାଳୟ ଦିଶି,
ଦୂରେ ତାର ସାକ୍ଷୀ ତପନ ଶଶୀ !

ଆସିଥିଲେ କି ହେ ସ୍ୱପନରେ ଭାସି
ସ୍ୱପନରେ ଖେଳି ଫେରିଲେ ଘରେ !
ଏତେ ଉଚ୍ଚ ଆଶା ବାସନା କି ସତେ
ଦି'ଦିନେ ବିକଶି ଦି'ଦିନେ ସରେ !

ଯଶ-ମନ୍ଦିରରେ ସାମନ୍ତ ବୋଲିଣ
ଭିଲେ ଲଭିଥିଲେ ଗୌରବଟୀକା,
ମହିମା-ଉଜ୍ଜ୍ୱଳ ସେ ବର ବପୁ କି
ପଡ଼ିଗଲା ଶେଷ ହେଲା ସେ ଶିକ୍ଷା !

## ଧଉଳି ପାହାଡ଼

କେତେ ଜାତି ହାତ ଧରି ଅଗେ ଚଳି
ଅଗୁଆ ହୋଇଣ ରଖିଲେ ନାମ,
ସତ୍ୟ ସାହସର ଜନ୍ମଭୂମିକୁ
ସତେ ମୋର ବିଧି ହୋଇଲେ ବାମ !

ରାଜା ରାଜଧାନୀ ପ୍ରାସାଦ ସଉଧ,
ଭାସିଗଲେ ସର୍ବେ ଦଇଅଜଳେ,
ସ୍ମୃତି ଛାର କି ହେ ଭାସି ନ ବୁଲିଇ
ଏବେ ହେଲେ ଶୂନ୍ୟ ଧଉଳିଚୂଳେ !

ଲିଙ୍ଗରାଜ ତୁଙ୍ଗ ମନ୍ଦିର ରହିଛି,
ରହିଛି ତ ସେହି ଧଉଳି ଗିରି,
ରହିଛି ଅନାଇଁ ଖଣ୍ଡଗିରି ଦରୀ.
ନ ଗାଏ କି ମନେ ସେ ଦିନ ଶିଳ୍ପୀ !

ନ କହେ କି ସେହୁ ହ୍ରଦ ବିଦାରଣ
କଳିଙ୍ଗ ପୁରାଣ ମହିମା କଥା ?
ଅତୀତ କାଳର ଗୌରବ ବଖାଣି
ନ ଆଣେ କି ପ୍ରାଣେ ଦାରୁଣ ବ୍ୟଥା ?

ପ୍ରତି ଶିଳାଖଣ୍ଡେ ପ୍ରତି ଝାଙ୍ଗି ମୁଣ୍ଡେ
ନ ଅଛି କି ଗୁମ୍ଫା କୀରତିରାଜି ?
ଏତେ ଥାଇ ଥାଇ ଏତେ ଦେଖି ଦେଖି
ଏ ଦେଶ ସପନ ନ ଯାଏ ଭାଙ୍ଗି !

କହ ତେବେ ମୋତେ, ଧଉଳ ପାହାଡ଼,
ଜହ୍ନ ଭଲ ବାରେ ମୋ ମୁଖ ଛୁଇଁ,
ଧଉଳ ଦେଶରେ ସେ ଦିନ ଜୀବନ
ଆସିବ କି ଆଉ ଆସିବ ନାହିଁ !



# ମୋ ଅଭିମାନ

କେତେ ତ ଭାବିଲି ମୁଁ କରିବି ଅଭିମାନ,
କେତେ ତ ପାଞ୍ଚିଲି ମୁଁ ଭାଙ୍ଗିବି ତବ ମାନ,
କେତେ ତ ରାଗ-କ୍ରୋଧେ ଅଧୀର ହୋଇସାରି
ଭାବିଛି ସ୍ନେହମୁଖେ ବୈରାଗ୍ୟ ଦେବି ଢାଳି,
ଭୁଲିବି ତବ ଗୁଣ, ସ୍ମରିବି ତବ ଦୋଷ,
ନ ହସି ମନେ ମନେ ଭରିବି ଦ୍ୱେଷ ରୋଷ,
ହରିବି ସବୁ ଦମ୍ଭ, ଦମିବି ଉଚ୍ଚ ମଥା,
କେବେହେଁ କାଳେ କାଳେ କହିବି ନାହିଁ କଥା;
ନୟନ ଅନ୍ତରାଳେ ନିମିଷେ ଯାଇ ଗଳି
କେତେ ତ ଅଭିମାନ ଏକାନ୍ତେ ଅଛି ଭାଳି,
କେତେ ତ ନିକଟରେ ପଡ଼ିଅଛି ପ୍ରାଣ,
କେତେ ତ ଲୁଟିଅଛି ମୋ ମାନ ଅଭିମାନ,
ପାଖରୁ ଗଲେ ସରେ ସବୁ ମୋ ପ୍ରାଣବଳ,
ଶେଷେ ହୁଅଇ ଶୁଷ୍କ ନୟନ ଛଳଛଳ।



# ଅଭାଗିନୀ *

[illegible]  ଗୁଲ୍‌ଯାଏ ତାର ଦୁଃଖେ,
ସେ ତ  କଥାଟି ନ କହେ ମୁଖେ !
ତାର  ନିଜ ଭାର ନିଜେ ବହି
ସେ ତ  ମୁଖ ଟେକି ଚାହେଁ ନାହିଁ ।
ସେ ତ  ତୋ ପାଖେ କେବେହେଁ ବସି
ପଥେ  ଘାଟେ ଯାଏ ନାହିଁ ହସି ।
ପ୍ରେମ  ଅନୁରାଗ କିବା କଥା
ବୁଝି  ଘୂରି ନାହିଁ ତାର ମଥା ।
ସେ ବା  ସେ ନାମେ ହୋଇଣ ବାଇ
କେବେ  ବସି ଗୀତ ଗାଇ ନାହିଁ ।
କେବେ  ପ୍ରୀତି-ପୁଷ୍ପଣକୁ ଘାଣ୍ଟି
କହେ  ନାହିଁ ତତ୍ତ୍ୱ ଦେବ ବାଣ୍ଟି ।
କହ  କହ ଦେଖି ମୁଖ ଟେକି
ଦୂରେ  ଧର୍ମକୁ କରଣ ସାକ୍ଷୀ,
ପାଖେ  ନିଜ ବକ୍ଷେ ହାତ ଥୋଇ,
କହ  କୋହ୍ଲ କି ରେ ତୁହ୍ଲ ଦ୍ରୋହ୍ମ ।

## ଅଭ୍ରଗିଣ

କହ　କହ ଦେଖି ସବୁ ଫେଡ଼ି,
ତୁ କି　ନ ଦେଲୁ ତା ହାତେ ବେଡ଼ି ?
ତୁହି　ନୋହୁ କି ଅନର୍ଥ ମୂଳ ?
ତୁ କି　ନ କଲୁ ତା ବର୍ତ୍ତ ଜୁର ?
ତୁହି　ନିଜେ ହୋଇ ପଥହୁଡ଼ା
ହେଲୁ　ନାହିଁ କି ରେ ଘରବୁଡ଼ା ?
ତାର　ଅଙ୍ଗ କାହିଁ ଗଲା-ବଢ଼ି,
କିବା　ତନୁ ତାର ଗଢ଼ାଗଢ଼ି,
କିବା　ନୟନ ଗୃହାଣୀ ତାର,
କିବା　ଉଜ୍ଜ୍ୱଳ କଜ୍ୱଳଗାର,
କିବା　ସିନ୍ଦୁର ବିନ୍ଦୁର ଶୋଭା,
କିବା　ତା ଗମନ ମନଲୋଭା,
କିବା　ପିକଜିଣା ମଧୁଭାଷା,
କହେ　ମଧୁରେ ଫୁଲାଇ ନାସା,
ସବୁ　ଚିହ୍ନିଲୁ ତୁ ବସି ବସି
ଲୋକେ ହସାଇଣ ନିଜେ ହସି ।

ପାଖ　ପଢ଼ଣାର ମନ ରଞ୍ଜି
କେତେ　ଉପମା ତୁ ଦେଲୁ ଖଞ୍ଜି ।
କଲୁ　କଳ୍ପନାର କେତେ ସୃଷ୍ଟି,
ଦୂରୁ　ଟାଣିଲୁ ଦର୍ଶକ-ଦୃଷ୍ଟି !
ଆପେ　ବୁଝି ତାର ବଂଶ ଗୋତ୍ର
ଖରେ　ପଠାଇଲୁ ସ୍ତବ ସ୍ତୋତ୍ର,

ପୁଣି କପଟ ଖେଳରେ ମାତି
ବାଟେ ବାଗୁରୀଟି ଦେଲୁ ପାତି,
ଦୂରେ ତରୁଣିରେ ବଂଶୀ ଧରି
ତାର ନାମ ସେ ବଂଶୀରେ ଭରି
ବାଇ କରୁଥିଲୁ ଜନପଦ,
ଏଣେ ଅଥୟ କଲୁ ତା ପାଦ,
ସଖୀ ସଜନୀ ଡାକିବା ଛଳ
ସେହି ନ ପାରି ଅସିଲା ଖର,
ଆପେ ଆପଣା କଳସ ଧରି
ନେବ ଯମୁନାରୁ ଜଳ ଭରି;
ଗୁରୁ ଗୁରୁ ଗରଜିଲା ଘନ,
ତାର ମନ ହେଲା ଛନଛନ,
ଘନେ ମାଣିକ୍ୟ ଉଠିଲା ଜଳି,
ତେବେ ତା ମନ ନ ଗଲା ଟଳି ।
ହେଲା ସେ ଘନ ଏ ଘନ ଭେଦ,
ଆଜ ବାଗୁରୀଟି ଦେଲା ଖେଦ,
ଅଜ ଯମୁନା ସାଧିଲା ବାଦ,
ଖରେ ଖସିଗଲା ତାର ପାଦ,
କୂଳ ପିଚ୍ଛିଳ ହୋଇଲା ଅଜ
ତାର କଳସଟି ଗଲା ଭାଜି !
ତେଜ ଗୋଟା ଗୋଟା ମାଛ ଅସି
ଗଲା ଛୁଟ କୂଳ ସବୁ ଗ୍ରାସି,

# ଅଭାଗିନୀ

ଲିଭି ଲିଭି ଗଲା ଦିନ ଛବି,
ହସି ହସି ଚାଲିଗଲେ ରବି,
ମେଘ ଦଳ ଦଳ ଚାନ୍ଦ ପାଇଁ
ଖୋଜି ବୁଲୁଥିଲେ ହୋଇ ବାଇ,
ଦୂରୁ ଦେଖିଗଲେ ତାର ଶୋଭା
ଫିଟି ଥିଲା ତା କୁସୁମ ଗଭା ।
ଘରେ ଚାରୁ ଗଞ୍ଜଣାକୁ ଡରି
ତାର ଦେହଟି ଯାଉଛି ଥରି,
ଶ୍ରମ ଝାଳ ଯାଏ ଅଙ୍ଗୁ ବହି
ପଦେ କଥା ନ ପାରିଲା କହି,
ନିତ ମୁଖେ ତାର କଥା ଠାରି
ଦେଲା ମନଭାଷା ମନେ ମାରି,
କେଶ ବାସ ସମ୍ଭାଳି ସେ ଖରେ
ପଛେ ଚାହିଁ ଚାହିଁ ଫେରେ ଘରେ ।
ଏତେ କରି ତୁହି ହେଉ ସଚ୍ଚା,
ଶେଷେ ହୁଏ ସେହୁ ଲୋକହସା ।
ଲୁଣ୍ଡି ଦେଉ ତାର ସଙ୍ଗ ଚାଣ୍ଡେ,
ବସେ ସେ ବାଟୁଆ ବଡ଼ଦାଣ୍ଡେ !
ଲୋକେ ତାର ସବୁ ଅପଯଶ,
କେହୁ ନ କହେ ତୋ ଦୋଷ ଲେଶ !
ବାଣ୍ଡେ ତା ନାମେ ଉଣ୍ଡିମ ବାଜେ,
ସହି ଯାଏ ସେହୁ ଭୟୁ ଲାଜେ ।

ତାର      କ ଦୋଷ ଅଛି ରେ ଭାଇ !
ସେ ବା   ଏତେ ସବୁ କାହିଁପାଇଁ !
ସେ ବା   ଆପେ କଲା କେଉଁ ପାପ,
ସେ ବା   ଭୋଗିଲା ଏ କେଉଁ ଶାପ,
ଏ ବା    କେଉଁ ଦେଶ ବ୍ରହ୍ମାମଣୀ,
ଏ ତ     କାଳ କୁବଢ଼ିରେ ହଣା !
କିଛି     ପୁରୁଷଙ୍କୁ ଦୋଷ ନାହିଁ,
ସବୁ     ସେ ନେବ ତା ଶିରେ ବହି !
ଦୁଃଖ     ପସରଟି ଧରି ଧରି,
ପାପ     ହଳାହଳେ ପ୍ରାଣ ଭରି,
ଛାଡ଼      କ୍ଷୀତ କୁଟୁମ୍ବଙ୍କ ପାଶ
ଆଜ     ବାପଣୀବାଥିକା ବାସ !
ଦେବ     ଶ୍ରୀଚରଣ ଫୁଲ ଗୋଟି
କିବା     ପଙ୍କେ ଆଜ ଗଲା ଲୋଟି !
ଗଣ୍ଡେ     ହାତ ଦେଇ ଭାଳେ ବସି,
ସେ ବା   କେଉଁଠୁ ଆସିଲା ଖସି !
ଥିତ      ପାହିଲେ ହିଅନ୍ତା ରାଣୀ,
ଆଜ      ପଥେ ବୁଲେ ଅଭାଗିନୀ !



# କିଏ ତୁମ୍ଭେ ?

କିଏ ତୁମ୍ଭେ ବୁଲି ବନେ ଉପବନେ
ଫୁଲେ ଫଳେ ଯାଅ ବସି ?
କିଏ ତୁମ୍ଭେ କାହୁଁ ଆସି କିଶଳୟ-
ଦଳେ ଲୁଚିଯାଅ ହସି ?

କିଏ ତୁମ୍ଭେ ବସି ଲତାବିତାନରେ
ମଧୁର ମୁରଲୀ ଧରି
ପାଷାଣ ହୃଦୟ ଭେଦି ଦୟା ବହି
ଦିଅ ସୁଧାଧାର ଭରି ?

କିଏ ତୁମ୍ଭେ ପଥେ ଘାଟେ ଉଭା ହୋଇ
ଆଡ଼ ନୟନରେ ଚାହଁ
ଶୁରି ଚକ୍ଷୁ ମେଲେ ନେହ ଅନୁରାଗେ
ଉବେଗେ ଲୁଚିଯାଅ କାହିଁ ?

କିଏ ତୁମ୍ଭେ ବସି ଚନ୍ଦ୍ରମଣ୍ଡଳରେ
ତୁନି ତୁନି କହ କଥା,
ସାତ ପରସ୍ତର ବାୟୁରାଶି ଭେଦି
ପ୍ରାଣେ ଆଣେ ନବ ବ୍ୟଥା ?

ଇନ୍ଦ୍ରଧନୁ-କୋଳେ କିଏ ତୁମ୍ଭେ ବସି
ଦୋଳି ଖେଳ ଗୀତ ଗାଇ !
ଭୂଲି ଗଲ଼ିଜର ସେଂମଧୁର ଗୀତ
ଯାଏ ମୋ ପବଣ ଛୁଇଁ ?

ଯାହା ମୁଁ ଦେଖୁଛି ତାହା କାହା କାୟା
ଅବା କାୟାରୂପୀ ଛାୟା,
ବୁଝିଲି ମୁଁ ଏବେ ଗୁର ଢଗେ ମୋର
ତୁମ୍ଭର ମୋହନୀ ମାୟା !



# ବିଜୟିନୀ

ଏତେ଼ ଗୁଣ୍ଡେ ରାଜଦାଣ୍ଡେ କାହିଁ ଯାଅ ଚଳି ଗୋ,
ଫଲସିଛ ପଦେ କେଉଁ ଅରି ଦେ୍ବ ଦଳି ଗୋ !
ଢାଲ୍ ବାଣ ତରବାରି ସବୁ ଅଛି ସଙ୍ଗେ,
ବିଜୟ-ଉଲ୍ଲାସେ କି ଗୋ ଚଳୁଅଛ ରଙ୍ଗେ ?
ତୁହାଇ ତୁହାଇ ବାଣ ଦେଉଅଛ ମାରି,
କିବା ପାଶ ଶୂରପାଶେ ଦେଇଛ ବିସ୍ତାରି !
ଢାଲ୍ ତରବାରି ତବ ନଶ୍ବର ନଶ୍ବର
କି ଭୀତି ମାନବପ୍ରାଣେ ଦେଉଛ ଭିଆଇ !
କି ମୋହନ ଗୁଣ ପୁଣି ବାଣେ ଅଛ ଖଞ୍ଜି !
କି କୌଶଳେ ଅରି ମନ ନେଉଅଛ ରଞ୍ଜି !
ବାଣବିଦ୍ଧ ଜୀବ ଆସେ ହସି ହସି ପାଶେ
ଢାଲଚ୍ଛାୟାତଳେ କ୍ଷଣେ ବିଶ୍ରମିବା ଆଶେ !
ଜିଣିଲି ସହଜେ ଯହିଁ ଗଲି ବାଟେ ଘାଟେ,
ବିଜୟିନୀ ଟିକା ତେଣୁ ରାଜଇ ଲଲାଟେ ।



# ରୂପସୀ

ଧୀରେ ଧୀରେ ପାଦ ଚାଳ ରୂପଭାରେ କମ୍ପେ ମହୀ,
ମାଟିରେ ଚାଲୁଛ ବୋଲି ଭ୍ରମେ କେହ୍ନେ ଦେବ କହି ।
ନାଚି ନାଚି ତ୍ରିଭଙ୍ଗୀରେ ଠିଆ ହୁଅ ଠାଣି ଧରି,
ସେ ଠାଣିରେ ସ୍ୱର୍ଗସୁଧା ପଡ଼ୁ ଏ ମରତେ ଝରି ।
ହସି ହସି କଥା କହ ଫୁଟୁ ହେ କୁସୁମରାଜି,
ନନ୍ଦନ ସଙ୍ଗୀତସ୍ୱର ମର୍ତ୍ତ୍ୟକାନେ ଯାଉ ବାଜି ।
ଲୁଚି ଲୁଚି ଦେଖାଦିଅ ସୌନ୍ଦର୍ଯ୍ୟର ଦ୍ୱାର ଖୋଲି,
ସଂସାର ଢାପିଢନେବେ ବୋଲି ହେ ଅଞ୍ଜନ ଗୋଳି ।
ନରର ନୟନେ ପଶି ଲଭ ହୃଦସିଂହାସନ,
ଅଣୁ ଅଣୁ ପ୍ରାଣେ ନିତ ଉନ୍ମାଦନା ଉଦ୍ଘାଟନ,
ସଂସାରର ଧୂଳି ହେଉ ପରଶରେ ସ୍ୱର୍ଣ୍ଣରେଣୁ,
ମରକାରାଗାରେ ବାଜୁ ଅମରର ବୀଣା-ବେଣୁ ।
ଢାଳ ଢାଳ ହେ ରୂପସି, ରୂପର ଅମିୟ ଧାରା,
ତବ ବିନା କେ ହରିବ ଏ ବିଶ୍ୱର ବିଷଜ୍ୱାଳା !



# ନାଚ ନାଚ ଶ୍ରୀ ଗୌରାଙ୍ଗ

୧

ନାଚ ନାଚ ଶ୍ରୀ ଗୌରାଙ୍ଗ ବାଜି ଖୋଳ କରତାଳ,
ନାଚୁ ନାଚୁ ଶ୍ରୀଅଙ୍ଗରୁ ବହୁ ପଡ଼ୁ ଶ୍ରମଝାଳ ।
ନାଚ ନାଚ ମହାପ୍ରଭୁ ମହାପ୍ରେମେ ଭୋଳ ହୋଇ,
ସଂସାରର ପାପ ତାପ ଦିଅ ବାରେ ଦିଅ ଧୋଇ ।
ଯେହ୍ନି ଦେଖ ଦୁଃଖୀ ପାପୀ ନିଅ ନିଅ କୋଳେ ଧରି,
ଅନାଥର ଗତି ଆଜି କିଏ ନାଥ ତୁମ୍ଭ ପରି !
ନବଦ୍ୱୀପଚନ୍ଦ୍ର ବାରେ ଉଠ ଏ ଗଗନ ଭାଲେ,
କେତେକାଳ ତମୋରାଶି ପୋଛିଦିଅ ନାଥ ତାଳେ ।
ତୋହ୍ଲା ଗୋପୀନାଥେ ଥରେ ଉଭା ହୁଅ ମହାପ୍ରଭୁ,
ବାରେ ହେଲେ ମେଣ୍ଟିଯାଉ ଭକ୍ତପ୍ରାଣ ଆଶା ସବୁ ।
ବ୍ରହ୍ମାଣ୍ଡ ଧୂଳିକଣା ହେଉ ବାରେ ସ୍ୱର୍ଣ୍ଣରେଣୁ,
ବାଜି ଉଠୁ ପ୍ରେମତାନେ ପ୍ରେମିକର ବୀଣା-ବେଣୁ,
ତରଙ୍ଗ ପର୍ବତ ଦୂରେ, ସ୍ଥିର ହେଉ ମହାସିନ୍ଧୁ,
ଆସ ଆହେ ଶ୍ରୀ ଗୌରାଙ୍ଗ ଆସ ହେ ଦରିଦ୍ରବନ୍ଧୁ !

୨

କେତେ ପାପ ଅତ୍ୟାଗ୍ନିର ସାରୁଅଛି ଏ ସଂସାର,
ବଳିଷ୍ଠର [illegible] ନିଃସ୍ୱ କରେ ହାହାକାର,
ପଥେ ଘାଟେ ବାର ବଳେ ଉଠେ ତ୍ରାହି ତ୍ରାହି ରବ,
ଯହିଁ ତହିଁ ପଡ଼ିଅଛି ଦୀନ ଦୁର୍ବଳର ଶବ,
ଦୁର୍ବଳର ଶବ ଠେଲି ବଳିଷ୍ଠର ଯାଏ ଯାନ,
ସେହି ଯାନେ ଦୁର୍ବଳର ହୁଏ ମୁକ୍ତ ପରିତ୍ରାଣ !
ଦୁର୍ବଳ ପଞ୍ଜରାହାଡ଼େ ବଳିଷ୍ଠର ଅଟ୍ଟାଳିକା !
ଦୁର୍ବଳର ରକ୍ତମାଂସ ବଳିଷ୍ଠର ପାଦେ ବିକା !
ମନୁଷ୍ୟର ମନୁଷ୍ୟର ନ ହୁଅଇ ପରିଚୟ !
ନରେ ନରେ ହୁଏ ଏବେ ଦେବଦାନବର ଭୟ !
ସତ୍ୟ ଶାନ୍ତି ସ୍ନେହ ପ୍ରୀତି ଯାଏ ନାଥ ଯାଏ ଲୁଚି,
ଆସ ନାଥ ପାଶେ ଆସ, ନ ଯାଅ ନ ଯାଅ ଘୁଞ୍ଚି ।
କରୁଣାର ସୁରଧୁନୀ ବହିଯାଉ ଦେଶମୟ,
ଦୈତ୍ୟଦାନବର ବଂଶ ବେଗେ ନାଥ ଲଭୁ କ୍ଷୟ ।



କପର ସେ ଦେଶ ଜଣି ଆସିଲ ତ୍ରିବେଣୀତୀରେ,
କପର ତା ଥାଟ ଛାୟା ପଡ଼ିଲ ଏ ନଦୀନୀରେ;
କପର ସେ ପୋତିଥିଲ ଜୟସ୍ତମ୍ଭ ଏଥି କୂଳଦେଶେ,
କପର ହର୍ଯ୍ୟକେନେ ବୁଲୁଥିଲ ବୀରବେଶେ,
କପର ସେ ପ୍ରଜାପୁଞ୍ଜେ ପାଳୁଥିଲ ପୁତ୍ର ପରି,
କପର ତା ନାମ ଶୁଣି ଯାଉଥିଲ ଶତ୍ରୁ ଥରି,
ସରିଛି ସେ ସବୁ ଆଜ, ଲାଗୁଛି ସ୍ୱପନ ସମ,
ଅଛି ଦେଶ, ନାହିଁ ତହିଁ ମୁକୁନ୍ଦର ପରାକ୍ରମ,
ମୁକୁନ୍ଦର ସିଂହାସନ ଗଲାଣି ତ କାହିଁ ଗଳି !
ବିଶ୍ୱ ମଧ୍ୟେ ନିଃସ୍ୱ ହୋଇ ରହିଛି ଦେଶଟା ଖାଲି !
ସିଂହର ସଦନେ ଆଜ ରହିଲେ ଶୃଗାଳଦଳ !
ଉତ୍କଳନନ୍ଦନେ ହେଲେ ଅହା କେଡ଼େ କ୍ଳୀବ ହୀନବଳ !
ନିଜ ଛାୟା ନିଜେ ଦେଖି ଭୟରେ ଯାଆନ୍ତି ଥରି,
ଛି ଛି ମୁକୁନ୍ଦର ଦେଶ ହେଲା ଆଜ ଏତେ ସରି !
ବହୁଛି ତ୍ରିବେଣୀ ଆଜ, ରହିଛି ରାଜାଙ୍କ ଘାଟ,
କାହିଁ ସେ ରାଜାଙ୍କ ଦେଶ, କାହିଁ ବା ସେ ରାଜ୍ୟପାଟ !

[ ୬ ]

ବହୁଛି ତ୍ରିବେଣୀ ଆଜ, ରହିଛି ରାଜାଙ୍କ ଘାଟ,
କାହିଁ ସେ ରାଜାଙ୍କ ଦେଶ, କାହିଁ ବା ସେ ରାଜ୍ୟପାଟ ?
ପୁଚ୍ଛିଲେ ଏ ପ୍ରଶ୍ନ ପ୍ରାଣୁ ଉଠେ ବାକ୍ୟ ବକ୍ଷ ଫାଟି,
ଅନୁବନ୍ଧ ହେବ ନାହିଁ ମୁକୁନ୍ଦଦେଶର ମାଟି,

କ୍ଷୁଦ୍ର ମଞ୍ଜି ଜନ୍ମୁଥାଏ ମହାଦ୍ରୁମ ଶତ ଶତ,
ଦେଶଭକ୍ତ ସାଧୁରକ୍ତ ନୁହେଁ ଭସ୍ମେ ପରିଣତ !
ବୀରରକ୍ତେ ବୀଜ ଗଢ଼ା କଥା ଅଛୁ କାଳେ କାଳେ,
ବୀରର ଶ୍ମଶାନେ ବୀରଶିଶୁ ଖେଳେ ଏ ସଂସାରେ;
ଯାଉ ଦେହ ଧୂଳି ହୋଇ ପଡ଼ିଅଛୁ ଏହୁ ଦେଶେ,
ଗୌରବର ଆତ୍ମା ଆଜ ବୁଲେ ଦେଶ ଗୃହପାଶେ,
ହାତ ଠାରି ନୀରବରେ ତାଙ୍କ କାନେ କହେ କଥା,
'ଉଠ ଭାଇ, ଉଠ ଭାଇ, ନ କର ରେ ନତ ମଥା ।
'ଗୌରବର ଧୂଳି ବୋଲି ଜନ୍ମ ହୁଅ ରାଜପଥେ,
'ଜୟଶ୍ରୀଭୂଷିତ ହୋଇ ବସ ପୁଣ୍ୟକୀର୍ତ୍ତିରଥେ,
'ଅତୀତକୁ ସାକ୍ଷୀ କରି ଗଢ଼ିଯାଅ ବର୍ତ୍ତମାନ,
ଅନଙ୍ଗ ଯଯାତି ଦେଶ ନୁହେ ନୀଚ, ନୁହେ ସାନ;
'ବୀର କପିଳେନ୍ଦ୍ର ଯହିଁ କଲା ଦୂରଦେଶ ଜୟ,
'ସେ ଦେଶ କି କେବେ ହେଲେ ହେବ ହୀନ, କହିବ ହେୟ !
'ମୁକୁନ୍ଦର ମୁକ୍ତ ଆତ୍ମା ଯାଇଛୁ ଯେ ଦେଶେ ଖେଳି,
'ସେ ଦେଶ ଲଲାଟେ ଲେଖା ବିଜୟବିଭୂତି ଶିଖି ।'
ବୀରଦେଶେ ବୀର ଅସି ଯାଇଛନ୍ତି ସିନା ଚଳି,
ଅଛ ତ ହେ ରବି ଶଶୀ, ଅଛ ତ ହେ ଗିରିଦଳି,
ଅଛ ତ ହେ ଶୈଳ, ସିନ୍ଧୁ, ଅଛ ସିନ୍ଧୁ-ଗରଜନ,
ଅଛ ସିନ୍ଧୁ-ବେଳାଭୂମି, ଅଛ ନଭେ ତାରାଗଣ,
ନଗରେ ପ୍ରାନ୍ତରେ ଅଛ କେତେ ତୁଙ୍ଗ ଦେବାଳୟ,
ରହିଛ କାନନଶ୍ରେଣୀ, ରହିଛ ମଧୁ ମଳୟ,

ରହିଛ ପ୍ରକୃତ ଦେବୀ, ହସୁଛ ତ ନିତ ନିତ,
ଅହ୍ନ ପର ଭେଦ ଭୁଲି ଡାକୁଛ ଅନନ୍ତ ପ୍ରୀତି,
ସମସ୍ତେ ତ ରହିଅଛୁ କହ ଦେଖି କହ ଥରେ,
କେତେ କାଳ ସେ ମହିମା ରହିଥିବ ଗୁପତରେ ।
ସେ ଅତୀତ କେତେକାଳ ବୁଲୁଥିବ ଶୂନ୍ୟ ଦେଶେ
ଭୂତ ପ୍ରେତ ପରି କେତେ କାୟାହୀନ ଛାୟାବେଶେ !
କେବେ କାୟା ଧରି ଆସି ମାନ୍ମାରୂପ ପରିହରି
ଜୀବନ ଯୌବନ ଦେବ ସ୍ୱଦେଶ ପରାଣେ ଭରି,
ହସିବ କୁଟୀର ସୌଧ, ହସିବ ନଗର ପଲ୍ଲୀ;
ହସିବେ ଆକାଶେ ପକ୍ଷୀ, ତଳେ ତରୁ ତୃଣ ବଲ୍ଲୀ,
ଘରେ ଘରେ ବୀରଶିଶୁ ଖେଳିବେ ଆନନ୍ଦେ ଖେଳ,
ଆଶା ପ୍ରୀତି ଆନନ୍ଦର ଲାଗିଯିବ ମଧୁମେଳ,
ଗାଇବ ଗରବେ କବି କରେ ନବ ବୀଣା ଧେନି,
'ଜୟ ମା ଜନମଭୂମି, ଜୟ ବୀରପ୍ରସବିନୀ ।'



# ଷୋଡଶୀ

ଏତକ ଆବେଗ କି ଗୋ ରଖି ତୁମ୍ଭେ ହୃଦେ ଭରି !
ଏତକ ପ୍ରତୀକ୍ଷା ପ୍ରାଣେ ପୋଷି ପଥେ ଯାଅ ଚଳି !
ଏତକ ଗୋ ପଦଚିହ୍ନ ଥାପି ଥାପି କାଟ କାଳ !
ଏ ବୟସେ ଏତକ କି ସହ, ଭୋଗ ଏ ଜଞ୍ଜାଳ !
ଏ ରୂପରେ ଏ ଅନଳ କିଏ ଆହା ଦେଲା ଜାଳି !
ଏ ପ୍ରଶାନ୍ତ ବକ୍ଷେ କିଏ ଏ ଅଶାନ୍ତ ଦେଲା ଢାଳି !
ଏ ନୟନେ ଏ ଗମନେ କିଏ ବା ସାଧିଲା ବାଦ,
କି ବୟସରେ କିଏ ଆହା ଘଟାଇଲା ପରମାଦ ।
କି ଲାବଣ୍ୟ-ପୟୋଧିକୁ କିଏ କି ମନ୍ଦର ଧରି
ଘାଣ୍ଟି ବାଣ୍ଟିଦେଲା ବେଗେ ବିଶ୍ୱେ ଖଣ୍ଡ ଖଣ୍ଡ କରି;
ଅଙ୍ଗେ ଅଙ୍ଗେ ରଖିଦେଲା ଖଞ୍ଜି ରତ୍ନ ସାର ସାର,
ତରଙ୍ଗେ ଭିଜୁରିଯାଏ ରଚିଲା ଏ ଲୀଳାମାଳ !
ନୟନର କ୍ଷୁଧା ତୃଷା ମେଣ୍ଟେ ତବ ପାଶେ ହେଲେ,
ହେ ଷୋଡ଼ଶି, ହେ ରୂପସି, ବିଶ୍ୱ ତବ ପଦତଳେ



# ବ୍ୟର୍ଥ ପ୍ରୟାସ

ହୃଦୟ ଗୋପନ କଥ ରଖି କି ପାରିବ ଆଜି ?
ପୂର୍ଣ୍ଣିମାରେ ଖେଳିଲାଣି ସିନ୍ଧୁବକ୍ଷେ ଏ ଯେ ଢେଉ !
ନାଚି ନାଚି ଢେଉ ପରେ ଢେଉ କୂଳେ ଯାଏ ବାଜି,
ଏ ରହସ୍ୟଲୀଳା କି ଗୋ ଲୁଚାଇ ପାରିବ ଆଜି ?
ହୃଦବୃନ୍ଦାବନେ ତବ ବାଜିଲାଣି ବୀଣା ବେଣୁ,
ଫୁଟିଛି କମଳ, ବହେ ମଳୟ ସେ ଫୁଲରେଣୁ,
ଛୁଟିଲାଣି ଗନ୍ଧବହ, କହିଲାଣି କାନେ କାନେ,
ଏ ଯେ ନବଜାଗରଣ ଜାଗେ ଆଜି ତବ ପ୍ରାଣେ,
ନିଜେ ତବ ଦେହ ମନ ଦେଲେଣି ସେ ପରିଚୟ,
କିପରି ବା ଲୁଚାଇବ ଏ ଉନ୍ମାଦ ମଧୁମୟ ।
ଏ ଉନ୍ମାଦେ ଘୂରି ଆମେ ଘୂରିଅ ଗୋ ଧରାସାରା,
ଘୂରିବେ ତୁମ୍ଭରି ସଙ୍ଗେ ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା,
ପଶୁ ପକ୍ଷୀ ସର୍ବେ ମିଳି ଗାଇବେ ତୁମ୍ଭରି ଜୟ,
ଲୁଚ ନା ଲୁଚ ନା ଆଉ, ଦିଅ ଆତ୍ମପରିଚୟ ।



# ରାଜପୁତ ଗୃହିଣୀ ଗୀତ

ଦଶମବର୍ଷୀୟା ରାଜପୁତକନ୍ୟା
ପ୍ରଥମ ଭେଟରେ ନେଇଛୁ ଗଣି,
ଦ୍ୱାଦଶବର୍ଷୀୟ ଏହୁ ବାଳକଟି
ହେବ ମୋର ଚିର ନୟନମଣି;

ସତ୍ୟ କରିଲା ରାଜପୁତକନ୍ୟା,
ତୁମ୍ଭଙ୍କୁ ହେ ଆଜ କଲି ବରଣ
ରାଜପୁତବାଳା ସତ୍ୟ ନ ଲଙ୍ଘେ
ଯାଉ ଅବା ରହୁ ନିଜ ଜୀବନ ।

ଆସିଲା ବିପଦ ଗୃହଦ୍ୱାରେ ଘୋର,
ଲୁଚିଲା ବାଳକ କାହିଁ ଗୋପନେ,
କେହି ନ ଜାଣିଲେ ଜଳେ ଅନଳେ ବା
ପଶି ମରିଗଲା ଯୁଦ୍ଧପ୍ରାଙ୍ଗଣେ;

## ରାଜପୂତ ସ୍ମରଣ ଗୀତ

ଭୁଲିଲା ଜଗତ ତାର ଗୁଣଗଣେ,
ବାଳିକା-ହୃଦରୁ ନ ଜିବେ ଚାହ୍ନ,
ରାଜପୂତବାଳା ସତ୍ୟ ନ ଲଙ୍ଘେ
ଯାଉ ଅବା ରହୁ ନିଜ ଜୀବନ ।

ଚନ୍ଦାଓ୍ୱତ କୁଳ ବିକ୍ରମ ଅତୁଳ,
ସେ କୁଳର ବୀର-ମହୁକୁଟମଣି,
କେତେ ପାଞ୍ଚ କଲେ କ୍ରଅଂଶୀ ବାନ୍ଧିଲେ
କନ୍ଦଣଲେ ଅବା ଲଭିବେ ଧନୀ;

ଧନ ସମ୍ପଦ କି ଟଳାଇ ପାରିବ
ରାଜପୂତକନ୍ୟା ସତ୍ୟ ବଚନ !
ରାଜପୁତବାଳା ସତ୍ୟ ନ ଲଙ୍ଘେ
ଯାଉ ଅବା ରହୁ ନିଜ ଜୀବନ ।

ଚନ୍ଦାଓ୍ୱତ ବୀର ଲୋଭ ଦେଖାଇଲା
କିଣି ନେବାପାଇଁ ବାଳିକା ମନ,
ରାଜପୁତ ଦର୍ପେ ବାଳିକା ଭଷିଲା,
'ରାଠୋରେ ବିକିଛି ମୋର ଜୀବନ ।'

ଚନ୍ଦାଓ୍ୱତ ବୀର ଭୟ ଦେଖାଇଲା,
ରାଜପୁତକନ୍ୟା ଜାଣେ କି ଭୟ !
ସାହସେ କହିଲା, 'ସତ୍ୟ କରିଅଛି
ଏ ଜୀବନ ମୋର ରାଠୋରମୟ ।'

ବଳେ ବାଳିକାର ଶବାହ୍ୱବାସନା
ଶୁଣି ହସି ହସି ବୋଇଲା ଧନୀ,
'ଚନ୍ଦାଓ୍ୱତ ବଳ ମରଣବଳରୁ
ଊଣା ହେବ ବୀର 'ଥାଉ ହେ ଜାଣି !'

ଏତେ ଭୟ ଭୀତି ଏତେ ପ୍ରଲୋଭନ
ଠେଲିଦେଲା ପାଦେ ଯୋଷାରତନ,
ରାଜପୁତବାଳା ସତୀତ୍ୱ ଲାଗି
ଯାଉ ଅବା ରହୁ ନିଜ ଜୀବନ ।

କାହିଁ ବା ରାଠୋର ? ସ୍ୱଦେଶକୁ ଛାଡ଼ି
ପର୍ବତକନ୍ଦରେ ନେଇଛନ୍ତି ସ୍ଥାନ,
ଭିକ୍ଷାଲବ୍ଧ ଅନ୍ନେ ଉଦର ପୂରାଇ
ମହାରାଣାପାଇଁ କରେ ସଂଗ୍ରାମ ।

'ସ୍ୱାମିଧର୍ମ' ପାଳି ସ୍ୱଦେଶହିତରେ
ପର୍ବତେ ପ୍ରାନ୍ତରେ ବୁଲୁଛନ୍ତି ନିତ,
କି ଭୟ ତାହାର, ରାଜପୁତ ବର୍ଚ୍ଛି
ଶ୍ୱାପଦ ଅନ୍ତରେ ଆଣଇ ଭୀତି ।

ସତ୍ୟ ପାଳିଲେ ରାଜପୁତ ନାରୀ
ରାଜପୁତ ବୀର ରଖେ ଧରମ,
ମହାଆନନ୍ଦରେ ହସି ହସି ବୀର
ହେଲେ ମୂର୍ଚ୍ଛି ପାରେ ନିଜ ଜୀବନ।

## ରାଜପୁତ ମରଣ ଗୀତି

ସତ୍ୟ ପାଳିଲେ ରାଜପୁତ ନାରୀ
ରାଠୋର ରଖିବେ ସତ୍ୟ ବଚନ,
ରାଜପୁତବାଳା ସତ୍ୟ ନ ଲଙ୍ଘେ
ଯାଉ ଅବା ରହୁ ନିଜ ଜୀବନ,



## ରାଜାଜ୍ଞା *

ଆସ ଆଜି ଅଙ୍ଗ, ବଙ୍ଗ, ଆସ ହେ ଉତ୍କଳ,
ଆସ ହେ କର୍ଣ୍ଣାଟ, ସିନ୍ଧୁ, ଦ୍ରାବିଡ, ସିଂହଳ,
ଆସ ପଞ୍ଚନଦବାସୀ,
ଚୌହାନ ରଠୋରଣଶୀ,
ହିମଗିରିକୋଳବାସୀ ଆସ ବୀରଦଳ,
ରାଜାଙ୍କ ଆଦେଶ ଆଜି, ଆସ ହେ ଚଞ୍ଚଳ ।

ସପ୍ତସିନ୍ଧୁ ପାରେ ରାଜା ଡାକୁଛନ୍ତି ଆଜି,
ସେ ମହାଆହ୍ୱାନ କର୍ଣ୍ଣେ ନାହିଁ କି ହେ ବାଜି !
ଶୁଣ ଶୁଣ ଭେରି କର୍ଣ୍ଣ,
ଶୁଣ ଶୁଣ ସେ ଆହ୍ୱାନ,
ଭାଷୁଛନ୍ତି, "ଆସ ଆସ ମୋର ପ୍ରଜାରାଜି,
ଅଢ୍ୟାତୁର ଅନାତୁର ବଳ ଯାଉ ଭାଜି ।

ପୃଥିବୀ ବକ୍ଷରେ ମୋର ଯହିଁ ଯେତେ ପ୍ରଜା,
ଆସ ରୁଣ୍ଡ ହୁଅ ଦେଖ ଏହି ମୋର ଧ୍ୱଜା,
ସାମ୍ୟ ମୈତ୍ରୀ ସ୍ୱାଧୀନତା
ଦେଖ ରକ୍ତବର୍ଣ୍ଣେ ଲେଖା,
ସେ ଧ୍ୱଜାର କୋଳେ ଆଜ ଲଭ ହେ ଆଶ୍ରୟ,
ଦେଖୁ ବିଶ୍ୱ ବ୍ରିଟନର କି ଶକ୍ତି ଅକ୍ଷୟ ।

ଦେଖୁ ଥରେ ଶତ୍ରୁ ମୋର ଦେଖୁ ନେତ୍ର ଫେଡ଼ି,
କି ଶକ୍ତି ସଞ୍ଚୟ ମୋର ଏ ଜଗତ ଘେରି,
କି ସାହସ କି ବିକ୍ରମ
କିବା ଧନ ଅନୁପମ
ରାଜ୍ୟ ରାଜ୍ୟ ରହିଅଛି ଗନ୍ତାଘର ସରି ।
ଏ ଦୃଶ୍ୟେ ଶତ୍ରୁର ବକ୍ଷ ଯାଉ ବେଗେ ଥରି ।

ହେ ମୋ ପ୍ରିୟ ପ୍ରଜାକୁଳ ଭାରତସନ୍ତାନ,
ମାତା ଭିକ୍ଟୋରିଆଙ୍କର ପ୍ରାଣପ୍ରିୟ ଧନ,
ନୁହ ତୁମ୍ଭେ ହୀନ, ଖର୍ବ,
ଅଛି ଅତୀତର ଗର୍ବ,
ଆଜ ବାରେ ସେ ଅତୀତ କର ଉଦ୍‌ବୋଧନ,
ଜଗତେ ଜଣାଅ ତବ ଭୀମ ପରାକ୍ରମ !

ବାରେ ଭୁଲିଯାଅ ଆଜି ଜାତି କୁଳ ଧର୍ମ,
ରାଜ୍ୟସେବା ରାଜସେବା ବୁଝ ଶ୍ରେଷ୍ଠ କର୍ମ,
ସେ ମହାଜାତୀୟ ଭାବେ
ଆସ ହେ ଭୀମ ଆହବେ,
ବ୍ରିଟେନର ସଖା ପରି ଉଭା ହୁଅ ଆସି,
ଶତ୍ରୁର ମଧୁର ଭ୍ରାନ୍ତି ଯାଉ ବେଗେ ଭାସି ।

କମ୍ପାଅ କୁମାରୀକୂଳ ହିମାଦ୍ରି ଗଗନ,
କମ୍ପିଯାଉ ସିନ୍ଧୁ ଗଙ୍ଗା ଶୁଣି ସେ ଗର୍ଜନ,
କୋଟି କୋଟି ମୋର ପ୍ରଜା,
କିବା ଦୁଃଖ କିବା ଲଜ୍ଜା !
ମୋ ଇଙ୍ଗିତେ ଶତ୍ରୁକୁଳ ଦେବେ ଧ୍ୱଂସ କରି,
ବ୍ରିଟେନ ସମରେ ଆଜି ନ୍ୟାୟଧର୍ମେ ବଳୀ ।

ଧର୍ମବଳେ ବଳୀ ଯେହୁ କିବା ତାର ଭୟ !
ସେ କିପାଁ ଗଣିବ ରଣେ ଜୟ ପରାଜୟ !
ଦୁର୍ବଳର ରକ୍ଷା ଲାଗି
ବ୍ରିଟେନ ସଂଗ୍ରାମଭାଗୀ,
ଧର୍ମ ଲାଗି ସତ୍ୟ ଲାଗି କରୁଛି ମୁଁ ରଣ,
ଧର୍ମର ସହାୟ ସଦା ଜଗେ ନାରାୟଣ ।

ସେ ସୁପ୍ତ ଗୌରବେ ଆଜି କର ଉଦ୍‌ବୋଧନ,
ଧ୍ୟାନନେତ୍ରେ ଖୋଜ ଦେଖି ସେ ଗୁପ୍ତ ରତନ,
ସେ ଗୌରବ ସେ ରତନ
କର ଶ୍ରୀଅଙ୍ଗଭୂଷଣ,
ସାମ୍ରାଜ୍ୟମୁକୁଟେ ମୋର ହୀରକର ସର
ବିରାଜ ଭାରତ, ଉଠ ନିଦ୍ରା ପରିହର ।"

ରାଜାଦେଶ କର୍ଣ୍ଣେ ତୋହର ଶୁଣି ହେ ଭାରତ,
ଉଠ, ଉଠ, ବେଳ ଗଲା ହୁଅ ହେ ଜାଗ୍ରତ,
ନାହିଁ ଆଜି ଅସ୍ତ୍ରଶସ୍ତ୍ର,
ହୃଦ ସଞ୍ଜୀବନ-ମନ୍ତ୍ର,
କହୁ ଏ ବେଳରେ ଆଉ ନ ରହ ହେ ବସି,
ଆସିଲାଣି ଶତ୍ରୁ, ବେଗେ ଧର ଧର ଅସି ।

ପ୍ରତାପ ସଂଗ୍ରାମ ନାମେ ମୁଖେ ନିଅ ବାରେ,
ଦୁର୍ଗାବତୀ ଲକ୍ଷ୍ମୀବାଈ ସ୍ମର ଭକ୍ତିଭରେ,
ତରୌର ହଳଦିଘାଟ
ସ୍ମରଣେ ଗୌରବ ବାଟ
ଦଶିବ, ଘୁଞ୍ଚିବ ସବୁ ମାୟାର ବନ୍ଧନ,
ଉଭାସିବ ନେତ୍ରେ ଆର୍ଯ୍ୟକୀର୍ତ୍ତି ସିଂହାସନ ।

ଦୃଷଦ୍ବତୀତୀରେ ଅବା ଶତୋରତଟରେ
ରଣାଜିତ ରାଜ୍ୟଜୟେ ବଙ୍ଗବିଜୟରେ
ଶତ୍ରୁସେନା ଅପ୍ରମିତ
ଥାଇ ରାଜ୍ୟ ନେଲିଲ୍ ସତ,
ଇତିହାସ କହେ, କେତା କୂଟ ବୁଦ୍ଧି ଧର
ପୋତଲେ ବିଜୟବାନା ଧର୍ମ ପରିହରି ।

ଏତେ ଏତେ ବିପଦରେ ଦେଇଛ ପରୀକ୍ଷା,
କି ଅବା ଲଭିବ ଆଜ ଶୌର୍ଯ୍ୟ ବୀର୍ଯ୍ୟ ଶିକ୍ଷା !
ରାଜାଙ୍କୁ ଦେବତା ପରି
ଭକ୍ତିକୁସୁମ ଭରି
ପୂଜାଛ ଭାରତ କାଳେ କାଳେ ଏହି ଦେଶେ,
ଆଜ ବୀରଦର୍ପେ ସର୍ବେ ଉଠ ରାଜାଦେଶେ ।

'ଜୟ ବ୍ରିଟେନର ଜୟ', 'ଜୟ ଭାରତର',
କୁମାରୀ ବକ୍ଷରୁ ଆଜ ହିମାଦ୍ରି କନ୍ଦର
କଣ୍ଠେ କଣ୍ଠେ ପ୍ରତିରବ
ହେଉ ବିଶ୍ବ ନିନାଦିତ,
ତ୍ରିଂଶ କୋଟି କଣ୍ଠେ ଆଜ ଉଠୁ ସେହି ତାନ,
ଉଠ ମା ଭାରତ-ଲକ୍ଷ୍ମି ! କରୁଁ ଆବାହନ ।

ଦିଅ ମା, ସନ୍ତାନଶିରେ ଶ୍ରୀଚରଣ ଧୂଳି,
ଜୀବନର ଦୈନ୍ୟ ଦୁଃଖ ଯାଉ୍ଁ ବେଗେ ଭୁଲି
ସର୍ବେ ଆଜି ଏକପ୍ରାଣେ
ଏକଧ୍ୟାନେ ଏକଜ୍ଞାନେ
ଆର୍ଯ୍ୟର ଅତୀତ ଶିର୍ଷ୍ଟ କରୁଁ ଦରଶନ,
ଦୁର୍ବଳ ଶରୀରେ ଲଭୁଁ ନବୀନ ଜୀବନ ।

ସେ ନବୀନ ପ୍ରଭାପୁଞ୍ଜେ ହୋଇ ପ୍ରଭାନ୍ୱିତ
ଭାରତ-ସନ୍ତାନ କରୁ ଜଗତ ଚକିତ,
ହସି ହସି ଏ ଜୀବନ
ଦେଇ ଧନ୍ୟ ଏ ଜନମ
ହେଉ, ମା, ଜଗତବକ୍ଷେ ରହୁ ତବ ଯଶ,
ନ କହୁ ବିଶ୍ୱରେ କେହି ଏ ଭାରତ ନିଃସ୍ୱ ।

କି କୁଳନନ୍ଦନେ କୋଳେ ଧରି ପୁଣ୍ୟବତୀ
ମଣ୍ଡିଲେ ତୋ ଅଙ୍କ କେତେ ଶୂର ବୀର ସତୀ !
ମା ଜନନୀ ଜନ୍ମଭୂମି !
କେତେ ତୋ ସନ୍ତାନେ ଋଣୀ
ତୋର ଶ୍ରୀଚରଣେ, ମାତଃ, କର ଗୋ କରୁଣା,
ସାହସ, ବିକ୍ରମ, ଶକ୍ତି ନୋହିବ ଗୋ ଊଣା ।

ବାସ୍ତବ-ଜଗତେ ଅବା ମେରୁଦ୍ରୁମେ ବସି
ତୋ ଶୁଭେ ଜୀବନ ଦେବୁଁ, ମାତଃ, ହସି ହସି,
ଲୋଡ଼ା ହେଲେ ବକ୍ଷ ଚିରି
ଦେଇ, ମା, ରୁଧିର ଢାଳି
ଅଲକ୍ତକ ରୂପେ ତୋର ରଞ୍ଜିବୁଁ ଚରଣ,
ଦିଅ ମା, ଆଶିଷ, ରକ୍ଷ ସନ୍ତାନର ପଣ ।

ଆସ ଆଜ ଅଙ୍ଗ, ବଙ୍ଗ, ଆସ ହେ ଉତ୍କଳ,
ଆସ ହେ କର୍ଣ୍ଣାଟ, ସିନ୍ଧୁ, ଦ୍ରାବିଡ଼, ସିଂହଳ,
ଆସ ପଞ୍ଚନଦବାସୀ,
ଚୌହାନ ରାଠୋରବଂଶୀ,
ହିମଗିରିକୋଳବାସୀ ଆସ ବୀରଦଳ,
ରାଣାଙ୍କ ଆଦେଶ ଆଜ, ଉଠ ଯେ ଚଞ୍ଚଳ ।



## କାର୍ତ୍ତିକ-ଦୀପ

[ ୧୦ ]

କୁଳକନ୍ୟା, କାହା କଥା ମନେ ମନେ ଭାଳି
ସ୍ୱରଗ ଆଲୋକ ଲାଗି ଦେଲୁ ଦୀପ ଜାଳି ?
କାହିଁ କେଉଁଠାରେ ସ୍ୱର୍ଗ, ଅଛୁ କି ତୁ ଜାଣି ?
କେବେ କାନେ ଶୁଣିଛୁ କି ସେ ସ୍ୱରଗବାଣୀ ?
କଏ ଅଛି ସ୍ୱର୍ଗେ ତୁ କି ଜାଣୁ ସେ ବାରତା ?
ଜାଣୁ କି ସେ ସ୍ୱର୍ଗେ ଅଛି ନର ବା ଦେବତା ?
ଜାଣୁ ନାହିଁ ଯେବେ କିଛି ସ୍ୱରଗ ଖବର,
କାହା ଲାଗି ଜାଳିଦେଲୁ ଦୀପ ଥରଥର ?
ଜନକ ଜନନୀ ତୋର ବନ୍ଧୁ ପରିଜନ,
ସୋଦର ସୋଦରୀ ଅବା ତେଜି ତୋ ସଦନ,
ବୋଲିଦେଇ ତୋ ଜୀବନେ ଘୋର ଶୋକମସୀ
ଚାଲି ଯାଇଛନ୍ତି, ଭାବୁ ତାଙ୍କ କଥା ବସି ?

ଶୁଣିଅଛୁ କାହା ମୁଖୁ ଅଛନ୍ତ ଉପରେ,
ତାଙ୍କ ଲାଗି ଏ ଦୀପଟି ଜାଳିଦେଲୁ ଘରେ ?
ଜୀବନ ଯୌବନେ ପ୍ରାଣେ ଜାଗେ ଅବା ଆଶା
ଅବା ନ ମେଣ୍ଟୁଛି କରୁ ପରାଣପିପାସା,
କାହା ଛାୟା ଅନୁସରି ପାଉରୁ ଭୂଷଣ,
ଅବା ହୃଦେ କାହା ଛବି ନାଚେ ଅନୁକ୍ଷଣ.
ପ୍ରାଣର ଗଭୀର ଦୁଃଖ ନ ପାରି ସମ୍ଭାଳି,
ଇଷ୍ଟଦେବ ସୁମରଣେ ଦେଲୁ ଦୀପ ଜାଳି ?

[୨]

କାର୍ତ୍ତିକ-ପୂର୍ଣ୍ଣିମା-ଶଶୀ ଉଜଳି ଗଗନ
ଧରଣୀଦେହେ ବରଷୁଛି ଅମୃତ କିରଣ,
ମୁହୂର୍ତ୍ତେ ଜାଗେ ସେ ଅମୃତ କ୍ଷଣକେ ପ୍ରସରି
ଧରି ବ୍ୟୋମ ପ୍ରତି ଅଙ୍ଗେ ଦେବ ଶୋଭା ଭରି,
ନାଚଇ ଏ ସାରା ସୃଷ୍ଟି ଆଲୋକବିଳାସେ,
କି କରିବ ତୋ ଦୀପଟି ରହି ସେଥି ପାଶେ ?
ଆସୁ ପଛେ ନଭେ ଉଠି ଶତ ଶତ ଶଶୀ,
ତୋ ଦୀପ ଆଲୋକ ତାହା ନ ପାରେ ପରଶି ।
ତୋ ବିଶ୍ୱାସ ସାଧୁ ମନ ଏ ସଂସାରେ କାହିଁ ?
ନିଜେ ଶଶୀ ନଭେ ବସି ଅଛି ତୋତେ ଚାହିଁ,
ଜାଳିଦେ ତୁ ତୋର ଦୀପ, ବାନ୍ଧଥା ତୁ ଆଶା,
ଅବଶ୍ୟ ମେଣ୍ଟିବ ତୋର ପରାଣପିପାସା;

## ଧାର୍ମିକ-ଦୀପ

ମୁକୁର ତୋ ଦୀପପ୍ରଭା ଯିବ ଦୂରେ ଚଳି,
ଭୁଞ୍ଜିବ ସେ ପ୍ରୀତି ଯାର ନାମ ଅଛୁ ଭୁଲି!
ଗୁନ୍ଥୁଥା ତୁ ତାର ନାମେ ପ୍ରୀତିପୁଷ୍ପମାଳା,
ଭରୁଥା ହୃଦସୁମନେ ଜାତି ଅର୍ଘ୍ୟଡାଲା,
ପ୍ରତିଦାନ ପ୍ରତି ତଳେ ନ ରଖି ମମତା
ସାଧ ପ୍ରୀତିତପ, ଯିବ ତୋର ସବୁ ବ୍ୟଥା ।
କୁଳକନ୍ୟା, କଣିକାଏ ତୋ ମନ ବିଶ୍ୱାସ
ଥିଲେ ମୋର ଲୁଚିଥାନ୍ତା କେତେ ତପ୍ତ ଶ୍ୱାସ ।



—**—

# କେଉଁ ଦେଶେ ଅଛ ?

କେଉଁ ଦେଶେ ଅଛ ପରାଣର ବନ୍ଧୁ,
କେଉଁ କୁଞ୍ଜେ ଅଛ ବଢ଼ି ?
ରହୁଛ କି ତୁମ୍ଭେ ବସନ୍ତ କୁସୁମ
ଅବା ମଧୁମାସ କଢ଼ି ?
କୁସୁମେ କେଶରରୂପେ ଶୋଭୁଅଛ
ଅବା କେଶରରେ ମଧୁ ?
ଯହିଁ ତହିଁ ଥାଅ ଦେଖେଁ ବା ନ ଦେଖେଁ
ତୁମ୍ଭେ ମୋ ପରାଣବନ୍ଧୁ ।

ପ୍ରଭାତ-ଗଗନେ ନବୀନ ତପନ
ଢାଳିଦିଏ ଶୋଭାରାଶି,
ସେ ଶୋଭାରେ ବୁଡ଼ି ପ୍ରଭାତୀ ସଙ୍ଗୀତ
ଗାଇଯାଏ ପକ୍ଷୀ ହସି,

## କେଉଁ ଦେଶେ ଅଛ ?

ତରୁଣ ତପନ ତରଳ କିରଣେ
ବୁଢ଼ୀ ଗାଏ ଧର୍ମ ଗୀତ,
ସେ ପ୍ରଭାତୀ ଗୀତେ ଶୁଣି ତବ ସ୍ୱର
ପୁଲକେ ନାଚେ ମୋ ଚିତ୍ତ ।

ନବୀନ ତପନ ନବ ସମ୍ଭାଷଣେ
ଫୁଟେ କେତେ ଜାତି ଫୁଲ,
ଫୁଲେ ଫୁଲେ ବୁଲି କେତେ ପ୍ରେମେ ଅଳି
କୁସୁମେ କରେ ଆକୁଳ,
ଅସୁଥାଇ ବାସ କୁସୁମୁ ପ୍ରସର
ଶୁଭୁଥାଇ ଅଳିସ୍ୱନ,
ଦେଖିଲେ ସେ ଶୋଭା ତୁମ୍ଭେ କାହିଁ ଅଛ
ମୋତେ ପଗୁରେ ମୋ ମନ ।

ମାଡ଼ିଗଲେ ଖରା ଘୋଟିଯାଏ ଧରା
ଦିବସର କୋଳାହଳ,
ବହିଯାଏ ଖରେ ତଳପାଶେ ମୋର
କର୍ମସ୍ରୋତ ଅବିରଳ,
ବାଟର ବାଟେଇ ଚାଲିଯାଏ ବେଗେ
ପାଶେ ମୋର ହସି ହସି,
ମୋ କ୍ଷୁଦ୍ର ଜୀବନ କ୍ଷୀଣ ସ୍ରୋତ ଦେଖି
ଭାବେଁ ତୁମ୍ଭ କଥା ବସି ।

ଦିନ କାମ ସାରି ଅସ୍ତାଚଳକୋଳେ
ତପନ ରଖିଲେ ମଥା,
ଘରେ ଫେରେ ପକ୍ଷୀ ମେଲାଣି ସଙ୍ଗୀତେ
କହି କେତେ ପ୍ରାଣକଥା,
ଫୁଲ ସଙ୍ଗେ ଫୁଲ କଥା କହେ ବସି
ବିଶ୍ରାମର ବେଳ ପାଇ,
ସେ ବିଶ୍ରାମଛବି ଦେଖି ମନେ ଆସେ
ତୁମ୍ଭେ ରହିଅଛ କାହିଁ ?

ଗୋଧୂଳି-ଗଗନେ ତାରାଟିଏ ବସି
ନଦୀ-ବକ୍ଷ-ଦରପଣେ
ନିଜ ମୁଖଶୋଭା ନିଜେ ଦେଖି ହସେ
କିବା ଭାବି ମନେ ମନେ,
ନଦୀକୂଳେ ବସି ତରୁଣ ଯୁବକ
ଗାଉଛି ସ୍ୱରଲହରୀ,
ସେ ସୁଧା ସଙ୍ଗୀତେ ତୁମ୍ଭ ସ୍ମୃତି ମୋର
ନିଅଇ ହୃଦୟ ହରି ।

କ୍ରମେ ମାଡ଼ି ଆସେ ନିଶା-ଅନ୍ଧକାର
ଉଠଇ ଉପରେ ଶଶୀ,
ଶଶୀ ପାଖେ ବସି ପୁଞ୍ଜି ପୁଞ୍ଜି ତାରା
ଜଳୁଥାନ୍ତି ହସି ହସି,

## କେଉଁ ଦେଶେ ଅଛ ?

ସେ କଳ୍ପନା ବାଣୀ ମୋ କଳ୍ପନା-ରାଣୀ
ଅଣିଦିଏ ମୋର ପାଶେ,
ସେଥି ସଙ୍ଗେ କପାଁ ମନେ ଅସେ ମୋର
——· ତୁମ୍ଭେ ଅଛ କେଉଁ ବାସେ ?

ରାକା ରଜନୀରେ ନିଶୀଥ ଗଗନେ
ଶଶୀ କରେ ରାଜପଣ,
ବଉଦ ସଙ୍ଗରେ କେତେ-ଲୁଚକାଲି
ଖେଳି ହରୁଥାଇ ମନ,
ଉର୍ଦ୍ଧ୍ୱନେତ୍ରେ ଯେବେ ବସି ସେହି ଖେଳ
ଦେଖେଁ ଏକା ପ୍ରାଣଭର,
ତୁମ୍ଭ କଥା ସ୍ମରି ଅଶ୍ରୁ ଦୁଇ ଟୋପା
ପଡ଼େ ମୋ ନୟନୁ ଝରି

ଦରିଦ୍ର କୁଟୀରେ ରଚି କୁଶଶଯ୍ୟା
ବିଶ୍ରାମ ଲଭିବା ଅଶେ
ଶୋଇଥାଏ ଯେବେ କେତେ କଥା କାହୁଁ
ଅସେ ବେଗେ ମୋର ପାଶେ,
ସେ ସବୁ ସଙ୍ଗରେ ବେଳେ ବେଳେ ବନ୍ଧୁ
ତୁମ୍ଭେ ଅସି ଦିଅ ଦେଖା,
ଦେଖା ସଙ୍ଗେ ସଙ୍ଗେ କେତେ ସ୍ମୃତିରେଖ
ହୁଏ ମୋ ହୃଦୟେ ଲେଖା ।

କିଏ ତୁମ୍ଭେ ଅବା କେଉଁଠି ରହୁଛ
କିଛୁ ନାହିଁ ମୁହିଁ ଜାଣି,
କାନ ପାରି କେବେ ବସି ଶୁଣି ନାହିଁ
ଛବ ବୀଣାଜଣା ବାଣୀ ।
ଏକା ବସି ବିଶ୍ୱସୌନ୍ଦର୍ଯ୍ୟସମ୍ଭୋଗେ
ନ ମାନଇ ମୋର ମନ,
ନେତ୍ରପ୍ରାନ୍ତେ ତେଣୁ ତୁମ୍ଭ ଛାୟା ବନ୍ଧୁ
ଭାସି ବୁଲେ ଅନୁକ୍ଷଣ ।



## ବିରହେ *

ନଭୋବାସୀ ତାରାଗଣ କହ ହେ କରୁଣା,
ତା ଉପରୁ ସ୍ନେହଦୃଷ୍ଟି ନ କରିବ ଊଣା !
ରତନଖଚିତ ନୀଳ ଗଗନରେ ବସି
ମନସୁଖେ ମୃଦୁ ମଂଦେ ସର୍ବେ ହସି ହସି
ସ୍ନେହସୁଧା ତା ଉପରେ ଦେଉଥିବ ଢାଳି,
ରହିବ ସେ ଘରେ ସ୍ନେହେ ମୋତେ ଭୁଲି ଭୁଲି !

ବିଷାଦଯାମିନୀ ନିଶା କରୁଛି ବିନୟ,
ତା ପ୍ରତି ନୋହିବ କେତେବେଳେ ହେ ନିର୍ଦ୍ଦୟ !
ଧୀରେ—ଅତି ଧୀରେ—ତବ ଚାରୁ କର ତୁଳି
ତା ଶ୍ରାନ୍ତ ନୟନେ ଶାନ୍ତିନିଦ୍ରା ଦେବ ଢାଳି;
ସବୁବେଳେ ସ୍ୱପନେ ସେ ଦେଖି ତବ କର
ଭାବିଲେ ଭାଲୁ ଜ୍ୟୋସ୍ନାମୟ ସେ କର ମୋହର !

ହେ ପ୍ରଭାତ ଧୀରେ ତାର ନିଦ୍ରା ଅପସର !
ପଠାଅ ତା ପାଶେ ପ୍ରାତ ପକ୍ଷୀର ସୁସ୍ୱର;
ସେ ସ୍ୱରେ ସେ ପ୍ରେମାଳାପ ଅନୁଭବୁ ପ୍ରାଣେ,
ନାଚୁ ତା କୋମଳ ହୃଦ ସେ ପ୍ରଭାତୀ ଗାନେ,
ଯେବେ ସେ ଶଯ୍ୟାରୁ ଉଠି ମେଲିବ ନୟନ,
ପଡ଼ୁ ତା ଶ୍ରବଣେ ନିତ ମଧୁମୟ ସ୍ୱନ !

ହେ ପବନ ଧୀରେ ସ୍ପର୍ଶ ତାର ଗଣ୍ଡସ୍ଥଳ !
ସେ ପରଶେ ମୋ ବାରତା ହେବ ନୋହୁ ସେ ଆକୁଳ ।
ତା ଚନ୍ଦ୍ରବଦନ, ନେତ୍ର, ଅଧର ପରଶ
କରି ମୋ ବାର୍ତ୍ତାଦେ ଆଣ ତା ପ୍ରାଣେ ହରଷ,
ଯେତେକାଳ ଭାଗ୍ୟଦୋଷେ ରହିବୁଁ ବିଦେଶେ,
ଥାଅ ତାର ପାଶେ ପ୍ରିୟ, ପ୍ରତନିଧି ବେଶେ !,



## ପ୍ରବାସୀ ସୈନିକର ଶେଷଚିନ୍ତା*

[୧]

ମୋ କୁଟୀରଲକ୍ଷ୍ମୀ ସତୀ ଶୋଭାପସୁନ୍ଦରୀ
ଜୀବନବଲ୍ଲଭୀ ପ୍ରାଣପ୍ରିୟା ସହଚରୀ,
ଜୀବର ଜୀବନ ମୋର ଗୁରୁ ଅଳଙ୍କାର,
ଦରିଦ୍ର ଗଳାରେ ମୋର ରତନର ହାର,
ସୁଖେ ଦୁଃଖେ ଛାୟା ପରି ଥିଲୁ ଅନୁସରି,
ମୁହୂର୍ତ୍ତକ ଅଦର୍ଶନ ମଣୁ ଯୁଗ ସରି ।
କି କହିବି କି ଲେଖିବି, ବକ୍ଷ ଯାଏ ଫାଟି !
ଆସିଲି ସମରେ ତୋର ମାୟାଡୋର କାଟି,
କାଟି କି ପାରିଲି ତେବେ ସ୍ନେହର ବନ୍ଧନ !
ସବୁବେଳେ ଲଭୁଥିଲି ତୋର ଦରଶନ,
କର୍ତ୍ତବ୍ୟ ଅଣିଲା ସିନା ସଂଗ୍ରାମେ ଓଟାରି,
ସବୁବେଳେ ହେଉଥିଲି ତୋର କଥା ଝୁରି,
ମନେ ପଡୁଥିଲା ତୋର ସ୍ନେହ-ବ୍ୟବହାର,
ସେ ତୋର ନିଃସ୍ୱାର୍ଥ ପ୍ରୀତି ସରଳ ଆଚାର;

ବାଜୁଥିଲା କାନେ ତୋର ବୀଣାଜିଣା ବାଣୀ,
ଦିଶୁଥିଲା ଚତୁର୍ଦ୍ଦିଗେ ତୋର ସେ ଚାହାଣୀ,
ଗଛେ ପତ୍ରେ ନାଚୁଥିଲା ତୋର ସେ ମୂରତି,
ତୋ ସ୍ମୃତି ସଂଗ୍ରାମେ ସଙ୍ଗୀ, ଦେଇଛୁ ଶକତି,
ଯୁଝୁଥିଲି ଯଶ ଲାଗି ଏକା ତୋହପାଇଁ,
ତୋ ବିନା ଯଶର ମୂଲ୍ୟ ଏ ସଂସାରେ କାହିଁ !
ବଡ଼ ଆଶା ଥିଲା ମନେ, ଯୁଦ୍ଧରୁ ବାହୁଡ଼ି
ପ୍ରବାସୀ ବିହଙ୍ଗ ପରି ଯିବି ଦେଶେ ଉଡ଼ି,
ବସିବି ତୋ ପାଶେ ସଖି, ଯିବ ସବୁ ଦୁଃଖ,
ପୁଣି ଥରେ ଦେଖିବି ତୋ ହସହସ ମୁଖ,
ଶାବକ ଦିଓଟି ପୁଣି ନେବି ଥରେ କୋଳେ,
ଚୁମ୍ବିବି ସେ ଚନ୍ଦ୍ରମୁଖ ସୁଖେ ସ୍ନେହଭୋଳେ,
ଶୁଣିବି କାନରେ ଥରେ ଦରୋଟି ବଚନ,
ନିରେଖିବି ନୟନେ ସେ ନିର୍ମଳ ନୟନ,
କହିବି ତୋତେ ମୁଁ ଦେଶେ ସମରବାରତା,
କିପରି ସହିଲି ତୋର ବିରହର ବ୍ୟଥା,
କିପରି ଧାଇଲି ତୋତେ ସ୍ୱପ୍ନେ ଜାଗରଣେ,
ପ୍ରବାସେ କେତେ ତୋ ସ୍ମୃତି ନାଚିଲା ନୟନେ ।

[ ୨ ]

ବିଧିର ବିଚାର ସଖି, ଅନ୍ୟ ପରକାର !
ଆଜି ନ ପାଇବୁ ମୋର ଶୁଭ ସମାଚାର,

ଜୀବନର ସବୁ ମୋର ହୋଇଅଛୁ ଶେଷ,
ଦଣ୍ଡେ ମୁହୂର୍ତ୍ତଙ୍କେ ମୁହିଁ ଯିବି ଅନ୍ୟ ଦେଶ,
ଖସି ଅସିଲାଣି ବଳ, ହଜୁଛି ଶକତି,
ଏଣେ ତେଣେ ଭ୍ରମେ ଭ୍ରମିଲାଣି ମୋର ମତି,
ବୁଝିଲିଣି ଶେଷବେଳ ଅସିଲାଣି ପାଶେ,
ଯିବାଲାଗି ସଜ ହେଲି ଏବେ ନୂଆ ବାସେ,
ବିଦାୟ ବେଳର କଥା ପଡୁଅଛି ମନେ,
କେଡ଼େ ଦୁଃଖେ ଦେଲ ବିଦା ଅଶ୍ରୁ ବରଷଣେ,
ବାଷ୍ପାକୁଳକଣ୍ଠେ ଦୁଃଖଗଦଗଦ ସ୍ୱରେ,
ପୁଚ୍ଛିଲ 'ଅସିବ କେବେ' ଅକୁଳ ଅନ୍ତରେ,
ଶିଶୁ ଦିଓଟିଙ୍କୁ ଅଣି ପକାଇଲ ପାଦେ,
କହିଲ, 'ଚରଣଧୂଳି ଦିଅ ଅଶୀର୍ବାଦେ'
ଅପେ ମୋ ଚରଣ ଧରି କହିଲ ବଚନ,
'କ୍ଷମା କର ସବୁ ଦୋଷ ଜୀବର ଜୀବନ,
ଜାଣି ବା ଅଜାଣି କରିଅଛି ଅପରାଧ,
ସେଥିଲାଗି ମନେ ଅଉ ନ ରଖ ବିଷାଦ ।'
ପ୍ରେମର ପ୍ରଥମ ଦିନ ପକାଇଲ ମନେ,
ଛଳଛଳ ହେଲା ନେତ୍ର ସେ ଦିନ ସ୍ମରଣେ ।
ଦିନ ଦିନକର କଥା ସଖି, ଅଜ ଭୁଲି
ହୃଦୟ-ଅବେଗ ଅଉ ନ ପାରେ ସମ୍ଭାଳି,
ମନେ ପଡ଼େ, ଯେବେ ତୁହି ଧରିଲ ମୋ କର,
ଜୀବନଯୌବନେ ହେଲା ଶୁଭ ସ୍ୱୟମ୍ବର,

ସୁନ୍ଦର ଦିଶିଲେ ମୋତେ ଗଛ ପତ୍ର ଲତା,
ଗାଇଏ ଡାହୁକେ କାନେ ତୁମ ତୁମ କଥା,
ନଦୀ-କଲକଲେ କେତେ ଶୁଭିଲା ସଙ୍ଗୀତ,
କି ମଧୁ ଆବେଶେ ଆହା ପୂରିଲା ଜଗତ !
ଆଜ ଦିନକର କଥା ପଡ଼ୁଅଛି ମନେ,
ଭୁଲିବୁ କି ସଖି, ତୁହି ସେଦିନ ଜୀବନେ ?
ପରିଣୟ ପରେ ଦିନେ ମୋହନ ଆବେଶେ
ସଜାଇଲୁ ମୋତେ ତୁହି ତୋର ରାଜବେଶେ
ଦେଇଥିଲୁ ସିଂହାସନ ରାଜଦଣ୍ଡ କରେ,
ଧରିଥିଲୁ ଆପେ ରାଜଛତ୍ର ମୋର ଶିରେ
ବ୍ୟଜନ ସଞ୍ଚାଳି ନାଶି ତାପ ଦେଲୁ ସୁଖ
କହିଥିଲୁ କେତେ ତୋର ପରାଣର ଦୁଃଖ !
ମାଗିଥିଲୁ ସେହି ଦିନ ମୋର ପାଶେ ବର—
'କହ ନାଥ, ତୁମ୍ଭେ ମୋର ରାଜରାଜେଶ୍ୱର ।'
କହିଥିଲି, 'ରାଜା ଯେବେ, ରାଜକର କାହିଁ ?'
କହିଲୁ, 'ମୁକର ଦେବ, ଦ୍ରୋହୀ ହେବ 'ନାହିଁ ।'
ସେ ଦିନରୁ ବରଷେ ତ ବିତିଲା ଜୀବନେ,
କେତେ ସ୍ମୃତି ଭାସିଗଲା ସାଗରସଙ୍ଗମେ,
ଭୁଲିଗଲି ତୋର ବର ଦୁଇ ଦଣ୍ଡ ଭାଳି,
ତୁ କିନ୍ତୁ କରିଲୁ ମୋର ପଦକ ସଙ୍ଗାଳି,
ଲିଭି ଲିଭି ଯାଉଥିଲା ସୁନ୍ଦର ତପନ,
ରକ୍ତବର୍ଣ୍ଣ ଦିଶୁଥିଲା ଗୋଧୂଳି-ଗଗନ,

## ପ୍ରବାସୀ ସୈନିକର ଶେଷ ଚିନ୍ତା

ହେମପ୍ରଭ ରବିଙ୍କର ପଡ଼ିଥିଲା ଘରେ,
ନାଚୁଥିଲା ଛାୟା ସଙ୍ଗେ ନାନା ପ୍ରେମଭରରେ,
ହସହସ ମୁଖେ ପକ୍ଷୀ ଫେରୁଥିଲେ ବାସେ,
ଥରେ ନୀଡ଼େ ରହି ଥରେ ଗୋଧୂଳି ଆକାଶେ,
ନବଜାତ ଶିଶୁଟିକୁ ରଖି ପଦତଳେ
କହିଲୁ ଏ କଥା ଦିନେ କେତେ ଭକ୍ତିଭରେ,
"ତୁମ୍ଭେ ପରା ମୋର ରାଜା ନିଅ ଏହୁ କର,
ଦରିଦ୍ର ପ୍ରଜାର ଆଉ କି ଅଛି ସମ୍ବଳ ।"
ସେହି ଚିହ୍ନ ଏ ଜୀବନେ ପାରିବି କି ଭୁଲି ?
କିଏ ଅଛି ଆଖି ଆଗେ ଆଙ୍କେ ଧରି ତୁଳୀ,
ତୋର ପାଶେ ଶିଶୁର ସେ ଫୁଟଫୁଟ ତନୁ
ଦେଖିଥିଲି କିପରି ବା ପାଶୋରିବି ମନୁ !
ଅନ୍ତିମ ବେଳରେ ସେହୁ ନାଚୁଛି ନୟନେ,
ମୁରୁଛିବ କିପରି ମୁଁ ସେ ଛବି ଜୀବନେ !
ପ୍ରତି ରକ୍ତବିନ୍ଦୁ ମଧ୍ୟେ ସେହି ଘର ଦ୍ୱାର,
ସେହି ପଶୁ ପକ୍ଷୀ ମୋର ଦରିଦ୍ର ସଂସାର,
ସେହି ବୃକ୍ଷ ଲତା, ସେହି ପ୍ରତିବାସି-ପ୍ରୀତି,
ଗ୍ରାମଦାଣ୍ଡେ ବାଲଲୀଳା, ମନ୍ଦିରେ ଆରତି,
ଜ୍ଞାତି ପରିଜନଙ୍କର ସ୍ନେହ-ବ୍ୟବହାର,
ଗ୍ରାମାକାଶତଳେ ଚନ୍ଦ୍ର ସୂର୍ଯ୍ୟଙ୍କ ବିହାର,
ସେହି ପଥ ଘାଟ, ସେହି ସସ୍ନେହ ମାଧୁରୀ
ଭାସି ବୁଲେ, ଶେଷବେଳେ ହେଲି ସର୍ବ ଫୁରି !

[୩]

ଯିବାବେଳ ହେଲା ସଖି, ଧେନୁଛୁ ମେଲାଣି,
ନ ଦେଖିଲି ତୋତେ ଅଜ, ହୃଦ ହୁଏ ହାଣି !
ମରଣକୁ ମନେ ମୋର ନାହିଁ କିଛି ଭୟ,
କେବେ ମରଣକୁ ମଣି ନାହିଁ ବିପତ୍ତିମୟ,
ଧର୍ମଶାସ୍ତ୍ରେ ପୁରୋଧାଙ୍କ ଅଭୟ ବଚନେ
ଧେନଛି ଏ ସାର ସତ୍ୟ ଏ ମୋର ଜୀବନେ,
ଜନମିଲେ ଯମଙ୍କର ନୁହେଁ ଏଡ଼ିବାର,
ଜନ୍ମ ସଙ୍ଗେ ମରଣର ଯମଜ ବେଭାର;
ଏତିକି ବାଧୁଛି ପ୍ରାଣେ, ତୁ ରହିଲୁ ଦୂରେ,
ଯିବାକୁ ପଡ଼ିଲା ମୋତେ ଏଥି ଯମପୁରେ !
କେତେ କାଳୁ ଏହି ଅଶା ପୋଷିଥିଲି ମନେ,
ତୋ କୋଳେ ମୁଦିବି ନେତ୍ର ଅନ୍ତିମ ଶୟନେ,
ତୋ ନୟନେ ମୋ ନୟନ ଜ୍ୟୋତିକୁ ମିଶାଇ
ତୋ ଚନ୍ଦ୍ରବଦନେ ଶେଷେ ଅନାଇଁ ଅନାଇଁ,
ହୃଦ ଫେଡ଼ି କହି ଥରେ ତୋତେ ଶେଷ କଥା
ହରିବି ଉରସେ ମୋର ମରଣର ବ୍ୟଥା,
ଶିଶୁ ଦଉଟିଙ୍କୁ ଶେଷେ ସମର୍ପି ତୋ ପାଶେ
ଯିବି ଯେବେ ଲେଉଟା ହେବ ଦୂରେ ନୂଆ ବାସେ;
ସେ ସୌଭାଗ୍ୟ ଏ ଜୀବନେ ନ ଲେଖିଲା ବିଧି !
କେତେ ଦୂରେ ରହିଲୁ ତୁ ମୋ ଲାବଣ୍ୟନିଧି !

## ପ୍ରବାସୀ ସୈନିକର ଶେଷ ଚିନ୍ତା

କେତେଦୂରେ ରହିଲେ ମୋ ନୟନପିତୁଳି !
କେତେଦୂରେ ରହିଲା ସେ ମୋ ଆନନ୍ଦପୁରୀ !
କେତେଦୂରେ ରହିଲେ ମୋ ବନ୍ଧୁ ପରିଜନ !
କେତେଦୂରେ ମୋ ଗ୍ରାମର ନିର୍ମଳ ଗଗନ !
ଶତ ସ୍ମୃତିପୂର୍ଣ୍ଣ ମୋର ନଦୀ ପୁଷ୍କରିଣୀ
ଗ୍ରାମପ୍ରାନ୍ତ ତୋଟା ବିଲ ସେ ପଲ୍ଲୀ ସରଣୀ !
ସବୁ ଦୂରେ - କେତେ ଦୂରେ—ରହିଲେଣି ଆଜି,
ଆଖି ଆଗେ ନାଚିଯାଏ ଯେହ୍ନେ ଛାୟାବାଜି ।
ଦିଶିଯାଏ, ଶିଶୁ ଦୁହେଁ ଆସି ମୋର ପାଶେ
ଅଳି କରୁଛନ୍ତି ଅବା ଆଲିଙ୍ଗନ ଆଶେ,
ହସି ହସି କହୁଛନ୍ତି ଦରେଟି ବଚନ,
କରନ୍ତି ଶ୍ରବଣେ ଅବା ସୁଧା ବରଷଣ,
କି ସୁଖରୁ ମହାପ୍ରଭୁ ଦେଲ ଛଡ଼ାଇ !
ଏଡ଼େ ଦଣ୍ଡ ଦେଲ ମୋତେ କେଉଁ ପାପ ପାଇଁ ?
କାହା ସୁଖ କେବେ ମୁହିଁ ଭାଙ୍ଗିଥିଲି ପ୍ରଭୁ,
ସହିବାକୁ ହେଲା ମୋତେ ଏ ଯାତନା ସବୁ !
କିପରି କହିବ ତୋତେ ଯେବେ ଏ ବାରତା
କହିଂବ ତୋ କାନେ ମୋର ମରଣର କଥା,
କେଉଁ ପ୍ରାଣେ ସଖି ମୋର, ସହିବୁ ଏ ଦୁଃଖ !
ପାଣ୍ଡୁର ଦିଶିବ କ୍ଷଣେ ତୋର ହେମମୁଖ,
ଫିଟିଯିବ ତୋ କବରୀ, ତୁଟିଯିବ ହାର,
ଶୁଖିଯିବ ସେ ଅଧର-ଜବା ମନୋହର,

ସେ ଚନ୍ଦ୍ରକାଞ୍ଚନ ଅଙ୍ଗ, ସ୍ୱେଦଧାର ବହି
ଅଶ୍ରୁସ୍ରୋତ ସଙ୍ଗେ ମିଶି ଚଳାଇବ ମହୀ !
କେତେ କେତେ ସୁଖସ୍ମୃତି ପଡ଼ିବ ତୋ ମନେ,
କେତେ ସୁଖଚିତ୍ର ତୋର ଭାସିବ ନୟନେ !
ଆଜ ସେ ସବୁରେ ସଖି, କିବା ପ୍ରୟୋଜନ !
କିବା ସୁଖ ଅତୀତର କରି ଜାଗରଣ !
ଗଲଣି ଅତୀତ ମୋର ପାତାଳ ଗରଭେ,
ତମୋମୟ ଭବିଷ୍ୟତ ଭାସେ ମୋର ନଭେ,
ସେ ଭବିଷ୍ୟେ କୂଳ ଥଳ ନ ଦିଶଇ ମୋତେ,
ଅଜଣା ସମୁଦ୍ରେ ଭାସେଁ ଅଜଣା ବୋଇତେ,
କାହିଁ ମିବ କିଏ ନେବ କେଉଁ ଦେଶେ ଭାସି !
ଅତଳ ସିନ୍ଧୁ ବା ମୋତେ ପକାଇବ ଗ୍ରାସି !
ଏତେ ଦୁଃଖେ ଏ କଥାଟା ମାନୁ ନାହିଁ ମନ
ମରଣ ତୁଟାଇ ଦେବ ପ୍ରେମର ବନ୍ଧନ ।
ସତେ କି ମରଣ ଅଟେ ଏଡ଼େ ବଳଅର,
ତୁଟାଇବ ତୋର ମୋର ପ୍ରଣୟର ହାର ?
ଘଟାଇବ ବିଚ୍ଛେଦ କି ଚିରକାଳପାଇଁ,
ସତେ ତୋର ମୋର ଆଉ ଭେଟ ହେବ ନାହିଁ ?
ପ୍ରାଣେ ଯେ ପ୍ରଣୟତୃଷ୍ଣା ଜାଗିଛୁ ଯୌବନେ,
ସତେ କି ତା ମେଣ୍ଟି ମିବ ଏ ମୋର ମରଣେ ?
ସତେ ଯେ ପିପାସା ନେଇ ହୋଇଥିଲି ଯୋଗ,
ସାରିଦେଲି ଏ ଜୀବନେ ଦୁଇଦିନ ଭୋଗ !

## ପ୍ରବାସୀ ସୈନିକର ଶେଷ ଚିନ୍ତା

ପ୍ରେମ ପରା ମରଣର ଊର୍ଦ୍ଧ୍ୱେ କରେ ବାସ,
ତେବେ କିପାଁ ଏତେବେଳେ ହେବି ମୁଁ ନିରାଶ ?
ପ୍ରେମରାଜ୍ୟେ ମରଣର ନାହିଁ ଅଧିକାର,
ଏହି ଆଶା ପୋଷି ସଖି, ତେଜିଲି ସଂସାର,
ଏହି ଆଶା ଧରି ଏବେ ଅଙ୍ଗେ ଆସେ ବଳ,
ସେହି ବଳେ ଦିଶେ ମୋତେ ମରଣେ ମଙ୍ଗଳ,
ମରଣର ପରପାରେ ନବ ବେଶ ଧରି,
ପ୍ରାଣେ ସେହି ସ୍ମୃତି ସେହି ପୂଣ୍ୟତୃଷ୍ଣା ଭରି,
ସେ ଅତୃପ୍ତ ବାସନାକୁ କରି ଗଣ୍ଠିଧନ
ଅନାଇ ବସିବି ତୋତେ ଜୀବର ଜୀବନ !
ମରଣରେ ଦେଶ କାଳ ହେବେ ପରାଜୟ,
ସୀମା ତେଜି ହେଇଯିବି ମୁହିଁ ବିଶ୍ୱମୟ,
ଗଛେ ପତ୍ରେ ଫୁଲେ ଫଳେ ସାଗରେ ଗଗନେ
ଅନନ୍ତ ତାରକାମେଳେ ଚନ୍ଦ୍ରମା କିରଣେ
ମିଶି ମୁଁ ଦେଖିବି ହେଲେ ତୋ ରୂପମାଧୁରୀ,
ଏ ମରଣେ କପଣକୁ ଯିବି ସଖି, ଭୁଲି ।
ଥିଲୁ ଧି ବତାସ ମୋର, ନ ହେବୁ ତୁ ଊଣା;
କାଳେ କାଳେ ରଖିଥିବୁ ତୋ ସ୍ନେହ କରୁଣା ।



# ଖୋରଧା ପ୍ରଥମ ଦର୍ଶନେ *

କି ଭୂମିରେ ଆଜ ଦେଲି ମୋର ପାଦ !
କି କଲି ଛି ଛି କଲି କେଡ଼େ ଅପରାଧ !
ଯେ ସେ ଭୂମି ନୁହେ ଏହୁ କ୍ଷୁଦ୍ର ସ୍ଥାନ,
କେଡ଼େ ସୁଦିନର ଗୌରବ-ଶ୍ମଶାନ !
ଯହିଁ ଠେକି ଦେଲେ ଠେକାଖଣ୍ଡେ ଏଥି
ମିଳିଯିବ ବୀର ଅସ୍ଥି ମେଦ ଗ୍ରନ୍ଥି !
ପ୍ରତି ରେଣୁ ସଙ୍ଗେ ବୀରର ଶୋଣିତ
କାଳେ କାଳେ ଏଥି ରହିଛି ଲେପିତ,
ପ୍ରତି ଝାଙ୍ଗି ତୋଠା ପୁରାଣ ଦ୍ରୁମରେ
ଲକ୍ଷ୍ୟଭେଦ ଚିହ୍ନ ରାଜଇ ଭାସ୍ୱରେ,
ଶାଳପ୍ରାଂଶୁ ବୀର ପାଇକ ପ୍ରଧାନ,
ଏବେ ଏଥି କରେ ପୂର୍ବକୀର୍ତ୍ତି ଗାନ,
ପକ୍ୱ ଗାଲମୁଣ୍ଡ ତଳେ ଢଳ ଚକ୍ଷି
ବଳୁଣେଇ ନୀଳ ଛଇଳ ନିରେଖି

ତେଜି ଦୀର୍ଘଶ୍ୱାସ କେତେ ପରକାରେ
କେତେ ପୂର୍ବ କୀର୍ତ୍ତି ପୂର୍ବ ସ୍ମୃତି ଫୁରେ,
ଯୁମୂଙ୍କ ବୀରତ୍ୱ, ସାମନ୍ତଙ୍କ ଠାଣି,
ଥାଟସଇଙ୍କର ଅବ୍ୟର୍ଥ ନିଶାଣି,
କେମାଙ୍କ ମୃଗୟା, ଅଶ୍ୱ ସଞ୍ଚାଳନ,
ବ୍ୟାଘ୍ର ବନ୍ୟ ମୃଗେ ତୀବ୍ର ଆକ୍ରମଣ,
ଶତ ଶିଳ୍ପକଳା-କୌଶଳେ କୁଶଳା,
ମର୍ତ୍ତ୍ୟେ ଅବତୀର୍ଣ୍ଣା ସାକ୍ଷାତ କମଳା,
ମଣିମାଙ୍କ ପରପେଟଚିନ୍ତା-ଦୟା,
ଦୁଃଖୀ ରଙ୍କୀ ପ୍ରତି ନିଯୁତ ଅଭୟା,
ସେକାଳ ଉଆସ ଆନନ୍ଦ ଉଲ୍ଲାସ,
ଦାନ ଧର୍ମ ସ୍ରୋତ ବୁହା ବାର ମାସ;
ଧନ ଧାନ୍ୟେ ପୂର୍ଣ୍ଣ ଘର ବିଲ ବାଡ଼,
ସ୍ତୁତ ତୁଣ୍ଡେ ଭାତ କି ଭାଠ ଉଢାସି,
ଭୂମି ସବୁକାଳେ ସୁଜଳା ସୁଫଳା,
ଜଳଚର ଜୀବେ ନଦୀ ପାଠ ଭରି,
ଦେଖେ ମନେ ଅବା କି ଅମିତ ବଳ,
କି ଅଂଚନ୍ଦ୍ରା ଶାନ୍ତି ଆନନ୍ଦ ନିର୍ମଳ !
ଏ କି ହେ ପାଇକେ, ଆଜ କିବା କଥା
କହିବାକୁ ପୁଣି ଠେକୁଅଛ ମଥା ?
ଏଡ଼େ ରକ୍ତବର୍ଣ୍ଣ ଦିଶଇ ବଦନ,
କି ଗୌରବେ ଅବା ଭରିଅଛି ମନ !

କି ଅପୂର୍ବ ସ୍ମୃତି ଉଠିଅଛୁ ଜାଗି !
ଅବା କାହିଁ ପାଇଁ ଉଠୁଅଛ ରାଗି !
ମନେ ପଡ଼ୁଅଛୁ ନିଜ ଯୁଦ୍ଧ କଥା,
ସହୁଛ କିପରି ଏହି ବକ୍ଷେ ବ୍ୟଥା ?
ଏ ଭୁଜେ ଭେଦିଗିଛି ବିପକ୍ଷର ବାଣ,
ଅଙ୍ଗୁଷ୍ଠିର ଅର୍ଦ୍ଧେ କଲ ଅର୍ଘ୍ୟଦାନ,
ଏହି ପୃଷ୍ଠେ ବାଜି ଶତ୍ରୁ ତୀକ୍ଷ୍ଣ ଶର
ନେଲା ମାଂସ ଏହୁ କ୍ଷତ କଲେବର,
ଢାଲ ତୀର ବାଣ ନଳୀ-ବର୍ଚ୍ଛା ଧରି
ହୋଇଛୁ ଏ କର ଦୃଢ଼ ଲୌହ ସରି,
ଏହୁ ଗଡ଼ଖାଇ, ଏହୁ ରାଜବାଟୀ
ଏହି ଦୂରେ ଦଣ୍ଡେ ବରୁଣେଇ ଘାଟୀ,
ଏହୁ ଘାଟ ମୁଣ୍ଡେ ଅଳପ ପାଇକେ
ଜଗି ଛିଣୁଥିଲେ ଅସଂଖ୍ୟ ବିପକ୍ଷେ,
ପାହାଡ଼ର ମୋଟେ ଲୁଚି ମାରି ଶର
ବିପକ୍ଷଙ୍କୁ କରୁଥିଲେ ଜରଜର,
ନଳୀନାଦେ ଥିଲେ ମେଦିନୀ କମ୍ପାଇ
ଶତ୍ରୁର ଅନ୍ତରେ ତ୍ରାସ ଉପୁଜାଇ,
ଓଡ଼ିଶାର ରକ୍ଷା ଓଡ଼ିଆ ପାଇକ
ହାତେ ଧରି ଓଡ଼ିଶାର ବଇରଖ
ଦୂର କାଞ୍ଚୀ ରାଜ୍ୟ ବଙ୍ଗଦେଶ ଜିଣି
ଜୟେ କେତେ ଦେଶ ନେଇଥିଲେ କିଣି !

# ଖୋର୍ଧା ପ୍ରଥମ ଦର୍ଶନେ

ତ୍ରିବେଣୀ ତଟରେ ମୁକୁନ୍ଦର ଘାଟ
ଏବେ ପରଶଂସେ ଓଡ଼ିଆର ଥାଟ ।
ଏବେ ଶ୍ରୀମନ୍ଦରେ କାଞ୍ଚୀ ଗଣନାଥ
କହନ୍ତି ସେକାଳ ସମର ବୃତ୍ତାନ୍ତ ।
ଥାଉ ହେ ପାଇକେ, ଥାଉ ସେ ଖବର,
କାହିଁକି ମିଛରେ ପୋଡ଼ିବ ଅନ୍ତର !
କହୁ କହୁ କଥା ରକ୍ତବର୍ଣ୍ଣ ଚକ୍ଷୁ,
କିବା ଊର୍ଦ୍ଧ୍ୱଶ୍ୱାସ ଜଠେ ତବ ବକ୍ଷୁ,
ଫାଟିଯାଏ ଅବା ଛତ, ହୁଏ ପ୍ରତେ,
କିବା ମର୍ମନ୍ତୁଦ ବ୍ୟଥାର ଆଘାତେ !
ତବ ଗୀତ ପାଇଁ ନାହିଁ ଆଉ ସ୍ଥାନ !
ତବ ଗାଥା ଲାଗି ନାହିଁ ଦେଶେ କାନ !
ପୂର୍ବ ଗର୍ବ ଯହିଁ ଏବେ ଶମଶାନ,
ବିଶ୍ୱେ ନିଃସ୍ୱ ନାମେ ଆଜି ହେୟ ମ୍ଲାନ !
ଯଦି ପୂର୍ବ କଥା ପଡ଼ୁଅଛି ମନେ,
କହ ବରୁଣେଇ ବ୍ୟାଘ୍ର ଶିଶୁ କାନେ,
କହ ସେ ସ୍ୱାଧୀନ ହରିଣଶାବକେ,
ତା ରକ୍ତ ସ୍ପନ୍ଦନେ ବିଜୁଳି ଚମକେ,
ତବ ଗାଥା ଶୁଣି ନିଶ୍ଚେ ତା ରୁଧିର
ନାଚି ମହୋଲ୍ଲାସେ ଦେବ ପ୍ରତିଗିର ।
ଦିଗଙ୍ଗନାକୁଳ ଦେବେ କରତାଳି,
ପ୍ରତିଧ୍ୱନି ଦେବ ବରୁଣେଇ ଦସି ।



## ନାମକରଣ *

[ ୧ ]

ମନସୁଖେ ପ୍ରିୟତମା ପାଶେ ଦିନେ ବସିଁ
ପ୍ରେମଭରେ ଗଳା ଧରି ଭାଷିଲି ହରଷି,
ଏତେ ରୂପ ଏତେ ଗୁଣ ଅଛ ଦେହେ ଭରି,
କେଉଁ ଯୋଗ୍ୟ ନାମ ମୁହିଁ ଦେବି ହେ ତୁମ୍ଭର ?
ଡାକିବି ଗୋଲାପ, ଅବା ସରଗର ଇନ୍ଦୁ,
ଅବା ତପ୍ତ ହୃଦୟର ଶୀତ ସୁଧାବିନ୍ଦୁ,
ଅବା ଶୁକତାରା, କିବା କମଳକଳିକା,
ଅଥବା ମୋ ଜୀବନକଣ୍ଠ-ମାଣିକ୍ୟ-ମାଳିକା,
କି ଅବା କଳ୍ପନାବାଳା କବିତାସୁନ୍ଦରୀ;
ଅବା ଲୀଳାବତୀ ନାମ ରଖିବି ତୁମ୍ଭର,
ଡାକିବି ବା ସୀତା ସତୀ ଦ୍ରୁପଦଦୁଲଣୀ,
ଅବା ଶାନ୍ତା ଶକୁନ୍ତଳା ଚମ୍ପକବରଣୀ,
ରଖିବି ଊର୍ମିଳା ନାମ ହେବ କି ସୁନ୍ଦର,
କବିତାରେ କେଉଁ ନାମ ଗାଇବି ତୁମ୍ଭର ?

[ ୨ ]

ଲଜ୍ଜାଦୁଃଖଭରେ ପ୍ରିୟା ଭାଷିଲ ବଚନ,
ଏତେ ଦୁଃଖ ପ୍ରାଣନାଥ, ଦଅ କ କାରଣ !
ଅଯୋଗ୍ୟରେ ଏତେ ପ୍ରେମ ଦଅ କପାଁ ଢାଳି !
ନେଦେ ଅସେ ଜୀବ ମୋର ତୁମ୍ଭ ପ୍ରେମ ଭୁଲି,
ଏ ପ୍ରୀତର ପରିଶୋଧ ନାହିଁ କାଳେ କାଳେ,
ବଡ଼ ଭାଗ୍ୟଫଳେ ମୁହିଁ ଜନ୍ମିଲି ସଂସାରେ,
ତୁମ୍ଭ ପରି ପତି ପାଇ ଧନ୍ୟ ମୋ ଜୀବନ,
ତୁମ୍ଭେ ମୋ ସଂସାରସୁଖ ମୋକ୍ଷର କାରଣ;
ନାମେ କପାଁ ଏତେ ମନ !—ନାମ ଛାୟାସର,
ଗୀତେ ଯାହା ନାମ ଦଅ,—ମୁଁ ସଦା ତୁମ୍ଭର ।
କାହିଁ ସୀତା ଶକୁନ୍ତଳା, କାହିଁ ମୋ ଜୀବନ !
ସାନ ବଡ଼ ଏକାକାର କର କ କାରଣ !
କବିତାର ଜଗ ନାମେ ନାହିଁ ମୋର ମତି,
ଯୁଗେ ଯୁଗେ ତୁମ୍ଭଙ୍କୁ ମୁଁ ପାଏଁ ପ୍ରାଣପତି ।



## ନବ ଜୀବନେ

ଘଡ଼ିକେ ଖରା ଘଡ଼ିକେ ଛରା
ଘଡ଼ିକେ ଧାରା ବୃଷ୍ଟି,
ଘଡ଼ିକେ ସ୍ନେହ ଘଡ଼ିକେ କୋହ
ଘଡ଼ିକେ କୋପଦୃଷ୍ଟି ।

ଘଡ଼ିକେ ଦୁହେଁ ଅଶ୍ରୁହରା,
ଘଡ଼ିକେ ରୁଷା ରୁଷି
ଘଡ଼ିକେ କେତେ ଘେନାଘେନ
ମଧୁର ହସାହସି,

ଘଡ଼ିକେ ଜନ୍ମମୃତ୍ୟୁଚିନ୍ତା
ଭୟବିହ୍ୱଳ ପ୍ରାଣେ,
ଘଡ଼ିକେ ଅଶ୍ରୁସିକ୍ତ ଗଣ୍ଡ
ବିଭୁକରୁଣା ଧ୍ୟାନେ

## ନବ ଜୀବନେ

ଘଡ଼ିକେ ଗତ ଜୀବନସ୍ମୃତି
ଦୁଆର ଖୋଲ୍‌ଖୋଲା,
ଘଡ଼ିକେ କେତେ ଶୂନ୍ୟ ଭବିଷ୍ୟ
ଦେଉଛି ତୋଳାତୋଳା ।

ଘଡ଼ିକେ ଗଢ଼ା ଘଡ଼ିକେ ଭଙ୍ଗା
ଘଡ଼ିକେ ମେଳ ଭେଦ !
ଘଡ଼ିକେ ପ୍ରାଣେ ପୂର୍ଣ୍ଣ ତୃପ୍ତି
ଘଡ଼ିକେ ଘୋର ଖେଦ !

ଘଡ଼ିକ ଘଡ଼ି କଅବା ଜଡ଼ି
ଲଗାଇଅଛ ପ୍ରାଣେ !
ନଅଛି ରସେ ଜାଣି ଦିବସେ
ନଗୃଅ ନାନା ଛାନେ !

ଏତିକି କଥା, ସକଳ ବ୍ୟଥା
ସପନେ ପାଉ ଲୟ,
ସକାଳ ସୂର୍ଯ୍ୟ ଆମ ଆନନ୍ଦେ
ଲଭୁ ଗୋ ପରାଜୟ ।



# ଆଲେଖ୍ୟ

କେଉଁ ତୂଳି ଧରି କେଉଁ ଆଲେଖ୍ୟ ତୁମ୍ଭର
ଚିତ୍ରପଟେ ଅଙ୍କିବି ମୁଁ ନ ପାରଇଁ କଳି !
କେତେ ରୂପେ ତୁମ୍ଭେ ଆସି ଦିଅ ଦରଶନ,
କେବେ ନତମୁଖି କେବେ ସସ୍ମିତବଦନ,
କେବେ ପ୍ରାଣଭରି ହସିଯାଅ ଢଳେ ଗଡ଼ି,
କେବେ ଦୁଃଖେ କହ କଥା ମୋର ପାଦେ ପଡ଼ି,
କେବେ ହସି ହସି ଦୂରୁ ଆସି ବସ ପାଶେ,
କେବେ କିବା ଲାଜେ ମୁଖ ଢାଙ୍କ ନିଜ ବାସେ,
କେବେ ଅତୀତର ବାଲ୍ୟଗୃହେ ଯାଅ ଚାଲି,
କୁଲେଇବେ ଖେଳି ବସ ଭରି ଧୂଳି ବାଲି,
କେବେ ଶିଶୁମେଳେ ଖେଳ ଲୁଚକାଳି ଖେଳ,
ବୁଢ଼ାଯାଉଥାଏ ସୂର୍ଯ୍ୟ ସରୁଥାଏ ବେଳ,
କେବେ ପ୍ରଥମରେ ପ୍ରାଣେ ବାଜି କୁହୁସ୍ୱନ
ନଚାଏ ତୁମ୍ଭଙ୍କୁ ଆଣି ନବ ଉଚ୍ଚାଟନ,

କେବେ ପୁଣି ଭବିଷ୍ୟତ ରାଜ୍ୟେ ଚାଲିଯାଇ
ଗମ୍ଭୀର ପ୍ରଶାନ୍ତ ମୁଖେ ରହ ହେ ଅନାଇ,
ଦୁଇପଦ କଥା କହୁଁ କର ଅଭିମାନ,
କେତେ ଦମ୍ଭ ସରେ ମୋର ଭାଙ୍ଗି ତବ ଠାଣି !
ତୁମ୍ଭର ସ୍ୱରୂପ ଖୋଜି ଦିଶଇ ଅନ୍ଧାର,
ଏକ ରୂପ ଶତ ରୂପେ କରୁଛ ପ୍ରଚୁର !
ଏକ ରୂପେ ଅନ୍ୟ ରୂପ ମିଶିଯାଏ ଖରେ,
ମୁହୂର୍ତ୍ତକ ରୂପ ମୁଁ ତ ନି ଅଙ୍କିଲି ଥରେ !
ଯାହା ଆଙ୍କେ ନୋହୁ ପଟେ ତାହା ତୁମ୍ଭ ଛବି,
ଅଲେଖ୍ୟର ସ୍ରଷ୍ଟା ତୁମ୍ଭେ ଭାବ ସୁଖୀ କବି ।



# ବିଷମ ପରୀକ୍ଷା

ରଜା ବଗିଚୁରେ ଫୁଲ ଫୁଟିଥିଲା
ମହକିଲା ଚଉପାଶ,
କେତେ ମାଳୀ ଗଲେ କେତେ କି ପୁଚ୍ଛିଲେ
ଦେବେ ଢାର ଗଲେ ଫାଶ;
ମାଳା ଫୁଲ ହୋଇ ରହିବାକୁ ଫୁଲ
ବାର ବାର କଲା ମନା,
ଅଭିମାନଭରେ ମୁହଁ ମୋଡ଼ି ଦେଇ
ରହିଲା ହୋଇ ବିମନା ।
କେତେ ଶାନ୍ତ ଶିଷ୍ଟ ମାଳୀ ପ୍ରଶଂସିଲେ
ଫୁଲ ରୂପ ଗୁଣ କଥା,
କହିଲେ, ଧନ୍ୟ ସେ ଏହିଘର ଯେହୁ
ନ ନୁଆଁଏ ନିଜ ମଥା ।
ଯେହୁ ଥିଲେ ରୁଷ ଲଭି ଏ କଟାକ୍ଷ
ପାଞ୍ଚି ପ୍ରତିଶୋଧ ସୂତ୍ର

ବନ୍ଧୁରରେ ବସି    ଫୁଲଟିଏ ପୁଣି
ଲୋଡ଼େ ସ୍ୱାଧୀନତା-ଧନେ !
ବନେ ଛଳେ କମ୍ପା    କଲେ କଉଶଳେ
କରିବାକୁ ହେବ ହାତ,
ସରୁ ଅବା ମଟୁ    ବୃକ୍ଷବୃନ୍ତୁ ଫୁଲ
ହେବ ନଷ୍ଟେଁ ଭୂମିପାତ ।
ପାଶେ ରହିଥିଲେ    ବୃକ୍ଷ ଅନ୍ତରାଳେ
ପ୍ରେମେ ଭୋଳ ଅଳିକୁଳ,
ମାଳୀଙ୍କ ବନ୍ଧୁର    ଶୁଣି ଧିକ୍କାରିଲେ,
"ମାଳୀଙ୍କ ପ୍ରେମ ଅତୁଳ !
ସ୍ୱାର୍ଥର ବଳରେ    ହେଉଥାନ୍ତା ଯେବେ
ପ୍ରେମରାଜ୍ୟ ଜୀବ ବନ୍ଧା,
ପ୍ରେମ ରାଇଜରୁ    ଲୁଚି ଯାଉଥାନ୍ତା
ଏତେ ମନକିଣା ଧନ୍ଦା !
ମନ କିଣିବାକୁ    ପ୍ରେମରାଇଜରେ
ଲୋଡ଼ା ନାନା ଉପଚାର !
ଅନୁଭବୀ ଯେହୁ    ଜାଣେ ସିନା ସେହୁ
ପ୍ରେମରାଜ୍ୟ ଉଚ୍ଛୃଙ୍ଖଳ;
ଉଚ୍ଛୃଙ୍ଖଳ ଖେଳ    ବିପଦେ ଡରିଲେ
ସମ୍ପଦ କି ଅଶେ ପାଶେ ?
ଅଳି ଶିଖାଇବେ    ମାଳୀଏ ଶିଖିବେ
ପ୍ରେମରାଜ୍ୟ ବାସେ ।"

ଏମନ୍ତ ବିଚାର ବହୁ ଚିନ୍ତା ପରେ
ସ୍ଥିର କଲେ ଅଳିକୁଳ;—
ମଧୁ ପୁଷ୍ପ ଗନ୍ଧ ଯେତେ ଯାର ଅଛୁ
ଆଣି ସର୍ବେ କରି ଠୁଳ;
ଯେତେ ଯାହା କଣ୍ଠେ ସୁସ୍ୱର ରହିଛି
ଯେତେ ଯାହା ଧରେ ବୀଣା,
ଅଣ ଅଣ ସର୍ବେ ଯିବା ଏକଦଳେ
ହେବ ପ୍ରେମରାଜ୍ୟ ଜୟୀ;
ମାନନୀର ମନ କଣାଯିବ ଆଜ
ଅଣାଯିବ ବଣା ଏଣୀ,
ଦେଖାଯିବ ଆଜ ପ୍ରେମବୀର ଅଳି
ଜାଲେ ନ ପଡ଼େ କି ଧନୀ ।
ଯୋଗ କାଳ ବେଳ ଧରି ବାହାରିଲେ
ଅଳିଏ ରାଜ-ଉଦ୍ୟାନେ,
ଅଳିକୁଳ ଦେଖି ଫୁଲ୍ ସମ୍ଭାଷିଲ
ବିନୟନମ୍ର ବଚନେ ।
ଏଢଂକରେ କେତେ ଅଣା ଖେଳିଗଲା
ମୂହୂର୍ତ୍ତକେ ଅଳିକୁଳେ,
ସିକ୍ତା ହୋଇଗଲା ମନ୍ଦାକିନୀ-ନୀର
ନୂଆ ପ୍ରେମତରୁ ମୂଳେ ।
ସବୁ ଉପହାର ଠୁଳ ହେଲା ଆସି
ଗୁରୁ ଫୁଲ ଶ୍ରୀଚରଣେ,

ଯେତେ ଯାହା ସ୍ୱର ଥିଲା ଗଲା ଟୁବିଗେ
ତୋଷିବାକୁ ଫୁଲ କାନେ,
କେତେ ଉପଗ୍ରର କେତେ ଅୟୋଜନ
ହେଲା କଣିବାକୁ ମନ,
ସମସ୍ତଙ୍କ ପ୍ରାଣେ ଜଳୁଥିଲା ଯେଣୁ
ପ୍ରଥମ-ପ୍ରେମ-ଦହନ ।
ଦେଖୁ ଦେଖୁ ଆସି କେତେ କାଳ ଗଲା
ଫୁଲ ନ ଫୁଟାଏ ପାଟି !
ଏ ସବୁରେ କିନ୍ତୁ ଅଳିକୁଳ ବକ୍ଷ
ଯାଉଥାଏ ନିତ ଫାଟି ।
ଶେଷେ ସଂଯମର ପରୀକ୍ଷା ସମୟ
ହେଲା ଆସି ଉପନୀତ,
ଅଳିଏ ଭାବିଲେ ନିଜ ମନଦୁଃଖେ
ଗୁଞ୍ଜିବା ସ୍ଥାନ ଉଚିତ ।
'ଆସୁଛୁଁ' ବୋଲିଣ ସର୍ବେ ଏକମେଳେ
ବିଦାୟ ମାଗିଲେ ଆସି,
'ଅସନ୍ତୁ' ଭାଷିଣ ଫୁଲ ଗୁଲିଗଲା
ଦେଖି ନିଜର ଅଯୁସୀ ।
ଫଣ୍ଠା ବର୍ଷେ ଫେର ଅଳିଏ ଭାବିଲେ,
ପ୍ରେମ ସଡ ଜୁଆଖେଳ,
ଏ ଖେଳେ କେ ଲଭେ ସୁନାର ମୁକୁଟ,
କାହା ଭାଗେ ହଳାହଳ !

କିଏ ପାଏ ରମା, କିଏ ପାଏ କଷ୍ଟ,
କିଏ ବସେ ଢୋଷେ ମନ,
କିଏ ହୋଇଯାଏ ରାଜରାଜେଶ୍ୱର,
କିଏ ସାରେ ମାନ ଧନ !
କିଏ ଘର ଦ୍ୱାର— ମାନ ଧର୍ମ ବିକି
ହାଉହାଉ ହୁଏ ପଥେ,
କିଏ ବିପଦର ଦାଢ଼ଁ ଆସି ଚଢ଼େ
ସମ୍ପଦ-ପୁଷ୍ପକ-ରଥେ !
ମାଳିଙ୍କୁ ଶିଖାଇ ଅପେ ଅଳିକୁଳ
ପାଇଗଲେ ମହାଶିକ୍ଷା,
ପ୍ରେମରାଇଜରେ ବେଳେ ବେଳେ ପଡ଼େ
ଏହି ବିଷମ ପରୀକ୍ଷା ।

# ନାଉରୀ ଗୀତ *

[ ୧ ]

'ଧୀରେ ବାହି ଆଣ ନାବଟି ତୋହର
ହେ ମୋର ନାଉରୀ ଭାଇ,
ଆସ ଆସ ବେଗେ ମୋ ପାଖକୁ ଚାଲି
ବସିଛି ମୁଁ ତୋତେ ଚାହିଁ ।
କଳକଳ ନାଦେ ବହୁଛି ତଟିନୀ
ନେଇ ଯା ସେ ପାଖେ ତୀରେ,
ସେ କୂଳେ ପହଞ୍ଚି ଯାଏଁ ମୁଁ ତ୍ୱରିତେ
ଲତାଦ୍ରୁମଶୋଭୀ ଘରେ ।
କି ଦେଇ ତୋଷିବି ବିପଦର ବନ୍ଧୁ,
କିବା ଅଛି ମୋର ଧନ !
କିବା ଉପହାର ତୋ କରେ ଅରପି
ହରିବି ତୋ ପରିଶ୍ରମ !

ଆଜ୍ ସେ ଭୁଲେଣି, ବାହୁ ଯା ତୁ ବେଗେ
ସବ ଅଛୁଅଛୁ ଧନ,
ଚିର ସଙ୍ଗୀ ହୋଇ ରହିଲୁ ତୁ ମୋର
ଏ କଥା ନୋହିବ ଆନ !'

[ ୨ ]

' ଚତୁର ନାଗର, କେତେ ରଙ୍ଗେ କଥା
କହୁ ମୋତେ ଏକା ପାଇ ।
ବେଗେ ବାହୁ ଗୁଲ ଝାପଘରେ ଯିବୁ,
ଆଜ କାହିଁ ଯାଉ ନାହିଁ ।'
'ବାପଘରେ ଯେବେ ଯାଉଛୁ ସୁନ୍ଦରି,
କର ମୋତେ ଅଙ୍ଗୀକାର,
ସେ ସ୍ଥାନେ ପହଞ୍ଚି ଲମ୍ବାଇବୁ ମୋର
ଗଳେ ପରିଣୟହାର ।
'ମୋପରି କୁମାରୀ କିପରି କରିବ
ଏତେକ ପ୍ରଶ୍ନ ସମାଧାନ !
ଚିରସଙ୍ଗୀ ହୋଇ ରହିଲୁ ତୁ ମୋର
ଏ କଥା ନୋହିବ ଆନ ।'

[୩]

ସରିଗଲା ସୁଖେ ବିବାହ-ଉତ୍ସବ
ଥିଲୁ ହେଲେ ବାଳ ମତ୍ତ,
ନାବଟି ମଣିଲା ସୁଖର ସଂସାର
ପାଇ ପାଶେ ପ୍ରାଣପତି ।

ତୁହେଁ ମିଳି ପୁଣି ତରଙ୍ଗଦୋଳାରେ
ଉଠାଇଲେ ପ୍ରେମ ତାନ,—
'ସୁଖେ ଦୁଃଖେ ସଙ୍ଗୀ ରହିଲୁ ତୁ ମୋର,
ଏ କଥା ନୋହିବ ଆନ ।



# ଯୁଗ୍ମଚାପ

[ ୧ ]

କି ଛୁଇଁ କାହାର ପାଟଣ କାଠୁ ରେ ସମସ୍ତ,
ଏତେ କି ରେ ହୋଇ ପାରେ ମନୁଷ୍ୟ ନିର୍ଦ୍ଦୟ !
ଯନ୍ତ୍ରଧୃତ ଧୃଷ୍ଟିମୁଖେ ଦେଉ ଅପେ ତାଳି—
କାନ୍ଦୁ କିବା ସୁଖ ଥରେ ନ ଦେଖିଲୁ ଭାଳି ।
ଅନ୍ୟ ପ୍ରାଣେ କି ବେଦନା କିବା ଅପମାନ
କି ଲାଞ୍ଛନା ଦେଇ ଏଣେ ତୋଷୁ ପର ପ୍ରାଣ !
କି ଅମୃତ ତେଜି ପିଉ କିବା ହଳାହଳ !
କେଉଁ ନ୍ୟାୟ ଦଣ୍ଡେ, ଭାଇ, କିବା ଧର୍ମଫଳ ?
ତୋ ପାଟଣ ଦେଇଛୁ ଯେହ୍ନୁ ସରବସ୍ୱ ତେଜି,
କପଟ ବା ତାର କଥା ନ ପାରୁଛୁ ହେଜି !
ହସି ହସି କରୁଁ ଯାହା ଭାବୁ ଶ୍ରେଷ୍ଠ କଥା,
ଥରେ ଭାବି ଦେଖ ଅପେ ନଇଁବ ତୋ ମଥା ।
ନ ମଣ ଏ ତୁଚ୍ଛ କଥା, କ୍ଷୁଦ୍ର ଅବସର,
ବର୍ବର ପୁରୁଷଭାବ ଏ କି ଅତ୍ୟାଚାର !

[ ୨ ]

ଜାଗର ବଳିତା ଜାଳି ତୋର ନାମ ଜପି,
ତା ଧ୍ୟାନ ଧାରଣା ସବୁ ତୋଠାରେ ଅରପି,
ନିଶୀଥର ଭୟ ଭ୍ରାନ୍ତି ଦୂରେ ପରିହରି,
କୁସୁମସମ୍ଭାରେ ତୋର ସୁଖଶଯ୍ୟା ଭରି,
ଦାସୀପଦ ଭୋଗକୁ ସେ ମଣି ସ୍ୱର୍ଗସମ
ଭଜୁଛି ତୋ ସନ୍ଧ୍ୟା ସାଧ୍ୱୀ ନିଶାଜାଗରଣ,
ନୟନରୁ ଲୋତକଧାର ଯାଉଅଛି ବହି,
କି ବେଦନା ତାର ପ୍ରାଣେ କେ ପାରିବ କହି,
କେ କଳିବ ତା ଅନ୍ତର ଅକଳନ୍ତା ଦୁଃଖ,
କେ ବୁଝିବ କେ ହରିଛି ତାର ହସମୁଖ,
ମର୍ମେ ମର୍ମେ ତପ୍ତ ଶ୍ୱାସ ଅଙ୍ଗେ ଅଙ୍ଗେ ସ୍ୱେଦ,
ନିଶା ଗରଜନ ଶୁଣେ ତା ଅନ୍ତର ଖେଦ
ମୂର୍ତ୍ତିମତୀ ସହିଷ୍ଣୁତା ସରଗପ୍ରତିମା,
ତୋ ସେବା ସଂସାର ଧନ୍ୟ, ଧନ୍ୟ ତୋ ମହିମା !



## ପୃଥ୍ୱୀରାଜଙ୍କ ପତ୍ର *

ପ୍ରତାପ, ପ୍ରତାପବୀର ସ୍ୱଦେଶମଣ୍ଡନ,
କ୍ଷାତ୍ରକୁଳ କାର୍ତ୍ତବୀର୍ଯ୍ୟ ହେ କୀର୍ତ୍ତିଭାସ୍ୱର,
ରାଜପୁତବଂଶରବି ହେ ଶତ୍ରୁମର୍ଦ୍ଦନ,
କେମନ୍ତେ କହିବି ଅବା କେଉଁ ଲେଖନୀରେ
ଲେଖିବି ଏ ମନସ୍ତାପ !—ବକ୍ଷ ଯାଏ ଫାଟି,
ଚକ୍ଷୁରୁ ରୁଧିରସ୍ରୋତ ବହୁ କରେ ଅନ୍ଧ,
ହସ୍ତ ପଦ ଏ ସମ୍ବାଦେ ଆଜ ହେ ଅବଶ,
ବଚନ ନ ସ୍ଫୁରେ ମୁଖେ, ନଇଁ ଯାଏ ମଥା,
ଅଳସ, ଅକ୍ଷମ, ଆଜି ଅଙ୍ଗ ଏ ଜୀବନ !
କେମନ୍ତେ ମୁଁ ବୁଝିବି ବା ସତ୍ୟ ଏ ସମ୍ବାଦ !
ସତ୍ୟ ଏ ସମ୍ବାଦ ଅବା ଶତ୍ରୁର କାହାଣୀ
—ହୀନବୁଦ୍ଧି ଜନଶ୍ରୁତ ଘୋଷେ ଏ ବାରତା—
ନିଭାଇବା ଲାଗି ଶେଷ କ୍ଷୀଣ ସୁଖ ଆଶା ।

ରାଜପୁତ ବକ୍ଷେ, କର ଏ କୁଠ ରଚନା ?
କପଟ ପ୍ରତ୍ୟୟ ଯିବ, କେଉଁ ଧନ ଦେଇ
କଣିଲ ଏ କେଣ୍ଠା, ସେହୁ ମହାମୂଲ୍ୟ ମଣି !
କାହିଁ ବା ସଂସାରେ ଧନ, କାହିଁ ବା ସେ ଧନୀ
କଣିବ ଏ ମହାଧନ – ଅତୁଲ୍ୟ ସମ୍ପତ୍ତି !
ଯେ ଧନେ କ୍ଷତ୍ରିୟକୁଳ – ସାନ୍ତ୍ର ବୀରତ୍ୱ,
ରାଜପୁତ ରମଣୀର ସତୀତ୍ୱରତନ—
କଣିଛୁ କପଟୀ, ଯାହା ପ୍ରଭାତର ପାଶେ
କବା ମୂଲ୍ୟହୀନ, ଛାର, ଜାନ ପ୍ରଲୋଭନ !
କୁହୁକୀ କୁହୁକ ଅବା ଫଳିଛୁ ଏଥର,
ସେ ମତ୍ତ ମାତଙ୍ଗ ଅବା ଛଳେ କଉଶଳେ
କପଟୀ କପଟ ପାଶେ ପଡ଼ିଅଛୁ ଧରା !
ରାଜପୁତ ଗିରଶୃଙ୍ଗେ ସେ ହର୍ଯ୍ୟକ୍ଷରାଜ,
ପଦାବକ୍ଷେପରେ ତାର ନେହର ଘୂର୍ଣ୍ଣନେ
ସରୋଷ କଟାକ୍ଷେ, ଦମ୍ଭେ ବୀରତ୍ୱ ହୁଙ୍କାରେ
କମ୍ପୁଥିଲା ଶତ୍ରୁବକ୍ଷ । ସେ କି ଅଦ୍ୟ ଶେଷେ
ଶତ୍ରୁ ପଦତଳେ ହେଲା ଅପେ ପୋଷା ଶ୍ୱାନ !
ଭୁଲିଲା କ୍ଷଣକେ ତାର ସବୁ ଶୌର୍ଯ୍ୟ ବୀର୍ଯ୍ୟ !
କୁଳସମ୍ମାନରେ ସେ କି ଦେଲା ଜଳାଞ୍ଜଳି ।
ବକ୍ଷ ଚିର ରକ୍ତସ୍ରୋତ ତାଙ୍କ ଗିରିଗର୍ଭେ
ହୋଇ ଅତି ହୀନବୀର୍ଯ୍ୟ ପଶିଲା ଶରଣ ।
— କେମନ୍ତେ ବା ସେ ରୁଧିରଧାର ଅଙ୍ଗେ ବହି

ଶତ୍ରୁପଦପ୍ରାନ୍ତେ ଯେହ୍ନୁ ରଖନ୍ତା ତା ଶିର ?
ସେ ରୁଧିର ଷାନ୍ତ ତେଜେ ମହାତେଜସ୍କର
ଏ ହୀନ ଅଙ୍ଗରେ ଘୃଣା ଲଜ୍ଜା ଅପମାନେ
ଆଣି ବୀରବକ୍ଷେ ତାର ବିପ୍ଳବ ତାଣ୍ଡବ
ରଖିଥାନ୍ତା ମଥା ଉଚେଇ ଗୌରବେ ଗରବେ ।

ହେ ପ୍ରତାପ, କି କହିବ କିବା ଗର୍ବଭରେ
ଶୁଣୁଥିଲି ଏଥି ତବ ଗୌରବ-କାହାଣୀ !
କହନ୍ତି ସାମନ୍ତେ ଯେବେ ପରଷଦେ ବସି—
'ଏକାକୀ ପ୍ରତାପ ଶତ ସହସ୍ର ସର,
ତା ନୟନେ ବିଦ୍ୟୁତ୍ଜ୍ୱଲାତ, ବକ୍ଷେ ସିଂହବଳ,
ଶରୀରେ ଅମିତ ତେଜ, ଅଜେୟ, ଅଭୟ,'—
ସତ୍ରକ୍ତୁ ଷମା ଷାନ୍ତ ତେଜ ଦାସତ୍ୱବନ୍ଧନେ,
ଚହ୍ନ୍ନୀଁହେଁ ମୋ ବକ୍ଷ ଦର୍ପେ ଉଠୁଥିଲା ନାଚ ।
ଶୁଣେ ଯେବେ ସିଂହ ପରି ଶୃଙ୍ଗୁ ଶୃଙ୍ଗାନ୍ତରେ
ପୁତ୍ର କନ୍ୟା ସଙ୍ଗେ ଘେନି ପ୍ରାଣପ୍ରିୟା ସତୀ
—ସ୍ନେହେ ଯେହ୍ନୁ ନାରୀ, ବୀର୍ଯ୍ୟେ ପୁରୁଷର ସ୍ବର—
ପ୍ରତାପ ଭ୍ରମଇ ସୁଖେ ସ୍ୱଦେଶଗୌରବେ
ଏଡ଼ି ଅବହେଳେ ଶତ୍ରୁ ଶତ ମାୟାଜାଲ;
ଶ୍ୱାପଦସଙ୍କୁଳ ବନେ ଶ୍ୱାପଦଙ୍କ ଭୟେ
ସନ୍ତାନେ ବୃକ୍ଷଶିଶାଖାବଲମ୍ବୀ ଅର୍ଗଳେ
ବୃକ୍ଷମାଳେ ବନବାସୀ ବର୍ବରଙ୍କ ପରି

ରକ୍ଷି ରଜନୀରେ ଅପେ ଘୁରୁଅଛୁ ବନେ
ସାଧିବାକୁ ଆତ୍ମବ୍ରତ,—ବକ୍ଷ ଫାଟେ ମୋର,
କିବା ମହାଭାବେ ମୋର ପୂରିଯାଏ ପ୍ରାଣ !
କୃତାଞ୍ଜଳିପୁଟେ ଧୀରେ ଜଣାଏ ମୋ ଅଳି
ବାହୁପାଶେ ଢାଳିବାକୁ ତବ ପୁଣ୍ୟଶିରେ
ଅଭୟ ଆଶିଷଧାରା ସ୍ୱରଗ ସମ୍ପଦ—
ରକ୍ଷିବାକୁ ତବ ଟେକ ଏ ମହୀମଣ୍ଡଳେ
ଉଜ୍ଜ୍ୱଳ ମିବାର-ଶିଖୀ ମିବାର-ଗୌରବ ।
'ବିପଦ ପ୍ରତାପ-କରେ କ୍ରୀଡ଼ନକ ସମ,
ଭୟ, ପ୍ରଲୋଭନ କିବା ନ ଜାଣେ ପ୍ରତାପ'
—ଶୁଣେ ଯେବେ ଜନମୁଖେ, କି ଆଶା ସାହସ
ଏ ମୁମୂର୍ଷୁ ପ୍ରାଣେ ଉଠେ ! କେତେ ମୁଁ ଅଟ୍ଟାଳି
ତୋଳଇ ଆକାଶେ ! କେତେ ମଧୁର ସ୍ୱପନେ
ମୁଗ୍ଧ ହୁଏ ପ୍ରାଣ, ତାହା କି କହିବ ଆଜ !

ଘାଟିଯୁଦ୍ଧେ କି ସାହସ, କି ସଂଯମ, ବଳ,
କିବା ସମରନୈପୁଣ୍ୟ, ହେ ରାଜସନ୍ନ୍ୟାସି,
ଷାନ୍ଦକୁଳରବି, ତବେ ଦେଲ ହେ ଦେଖାଇ !
ସ୍ୱଦେଶର ସ୍ୱାଧୀନତା କିବା ମହାଧନ,
ସେ ଧନ ହରାଇ ଦେଶ କି ହୀନ ଦୁର୍ବଳ,
କିବା ହେୟ, ପରପଦାନତ, ଶ୍ରୀହୀନ !
ସେ ଧନ, ସେ ରାଜଶ୍ରୀ ଲଭ ଅଟେ ବୀର

ଶସ୍ତ୍ରରୁ ଶୋଣିତ ଦେଇ କରିଛ ତର୍ପଣ
ପିତୃପିତାମହଙ୍କର ! ସେ ଗୌରବଗାଥା,
ସେହି ବୀରତ୍ୱକାହାଣୀ କାଳେ କାଳେ ଉଠେ
ସଞ୍ଚରିବ ଲୋକମୁଖେ ! ଚିତ୍ତପାବନୀ
ପୁଣ୍ୟ ଗଙ୍ଗାଧାରା ସମ ଦେବ ମହାଶକ୍ତି,
ସାହସ ଉତ୍ସାହ ଦୀନହୀନ ମୃତପ୍ରାଣେ !
ପରାଧୀନ କେତେ ଜାତି ସେ ଗାଥା ସ୍ମରଣେ
ଦାସତ୍ୱଶୃଙ୍ଖଳୁ ଆପେ ଲଭିବେ ମୁକତି
—ଯୁଗେ ଯୁଗେ ସେହି କଥା ଅମୃତର ସମ !
ଦ୍ୱାବିଂଶ ସହସ୍ର ସୈନ୍ୟ ସଙ୍ଗେ ଘେନି ବୀର,
ଷାଠକୁଳାଙ୍ଗାର ହୀନ ମାନସିଂହ ସଙ୍ଗେ
ସେଲିମକୁ ଯେ ଲଢ଼ିଣ ଦେଇଛ ସଂଗ୍ରାମେ,
ସ୍ୱର୍ଣ୍ଣାକ୍ଷରେ ଲେଖା ହେବ ପୃଥିବୀବକ୍ଷରେ !
ସେହି ଅପୂର୍ବ ଅମ୍ଳେସ୍ପର୍ଶ ରଣୋନ୍ମାଦେ ମାତି
କ୍ଷିପ୍ର ରୁଦ୍ରରୂପେ ଘାଟେ ଘୂରିଲ ପ୍ରତାପ,
ତାହାର ତୁଳନା ସେହି ! ସେହି ଦିନୁ ଘାଟି
ଭାରତବାସୀର ହେଲା ମହାତୀର୍ଥସ୍ଥଳ ।
ଯେବେ ଭୂଭାରତେ ହେବେ ଆର୍ଯ୍ୟ ହୀନବଳ,
ପରମୁଖାପେକ୍ଷୀ, ପରପଦାଙ୍କାନୁସାରୀ,
ଏ ପବିତ୍ର କ୍ଷେତ୍ରେ କରି ତବ ପ୍ରାଣପୂଜା
ପାଇବେ ଚେତନା; ପୁଣି ଆର୍ଯ୍ୟନାମେ କାର୍ଯ୍ୟେ
ଅବନୀପୃଷ୍ଠରେ ଦିନେ ଲଭିବେ ପ୍ରତିଷ୍ଠା ।

ତବ ପୁଣ୍ୟସ୍ମୃତିପୂତ ଘାଟର କାହାଣୀ
କାଳେ କାଳେ ନଗ୍ରୁଇବ କବିର କଳ୍ପନା,
ସମରବିଳାସୀ ବୀର ଧମନୀ ଶୋଣିତ,
ଦେଶଭକ୍ତ ଶ୍ରାନ୍ତ ପ୍ରାଣେ ଦେବ ଅଗ୍ନିକଣା ।

ହିନ୍ଦୁର ଭରସା ହିନ୍ଦୁ, ହିନ୍ଦୁ ଶତ୍ରୁ ହିନ୍ଦୁ,
ହିନ୍ଦୁ ବିନା କାର ସାଧ୍ୟ ଏ ମହୀମଣ୍ଡଳେ
ଏ ଭାରତେ—ଏ ଦୁର୍ଗମ ଦୁର୍ଗେ—ଦେବ ପାଦ,
ପାଇଁ ଅମଙ୍ଗଳ ପିଣ୍ଡେ ରଖିବ ପରାଣ ?
ଗଲେ ପୃଥ୍ୱୀରାଜ, ଗଲା ଦ୍ରୋହୀ ଜୟଚନ୍ଦ୍ର
କାଳସାଗରରେ ଭାସି ବୁଦ୍‌ବୁଦ ସମାନ,
ଥାନେଶ୍ୱରେ ପୋତା ହେଲା କଳଙ୍କର ସ୍ତମ୍ଭ
—ଦେଶଦ୍ରୋହୀ ଭ୍ରାତୃହନ୍ତା ବିଜୟୀନିଶାଣ !
ସେ ପାପର ଫଳେ ଅସ୍ତ ଗୌରବ-ତପନ
ଚିରକାଳ ହିନ୍ଦୁମୁଖେ ବୋଲି ଦୁଃଖମସୀ,
ସେ କଳଙ୍କସ୍ରୋତେ ଭାସିଗଲା କେତେ ଶୌର୍ଯ୍ୟ,
କେତେ ବୀର୍ଯ୍ୟ, କି ବୀରତ୍ୱ, କେତେ ବା ସାମର୍ଥ୍ୟ
କେତେ ଯୁଗ ଯୁଗାନ୍ତର ତପସ୍ୟାର ଫଳ
ଶ୍ରୀହୀନ ଅନାଥ କରି ଏ ପୁଣ୍ୟ ଭାରତ !
କି ଅକ୍ଷୟ ତପୋବଳେ ବାପ୍ପା ରାଓ କୁଳେ
ଜନ୍ମିଛ, ହେ ଦେବ, କରିଃସେ କୁଳ ଉଜ୍ଜ୍ୱଳ ।
ରାଜପୁତବଂଶେ ଅବା କି ଅଛି ହେ ଆଜ

ତବ ବିନା ? ସବେଂ କୀର୍ତ୍ତି—କ୍ଷୁଦ୍ର ମୁଦ୍ରାଖଣ୍ଡେ,
କେହୁ ବା ସ୍ୱବୃତ୍ତି ଲାଗି, କେହୁ ଭୂଖଣ୍ଡରେ,
ପବିତ୍ର ଏ ବଂଶ ଯାର କାଳେ କାଳେ ଖ୍ୟାତି
ହେଲା କି କୁକ୍ଷଣେ ବୀର, ଚିରକଳଙ୍କିତ !
କି କହିବ ?—ରାଜପୁତକନ୍ୟା ହେଲା ଆଜି
ପିନ୍ଧାଦେବଣେ ଯବନର ଅଙ୍କବିଳାସିନୀ !
ସତୀତ୍ୱସମ୍ମାନେ ଯେହୁ ଅଙ୍ଗ ଦେଲେ ଢାଳି
ଜହର ଅନଳେ ଧାୟି ପତି ଶ୍ରୀଚରଣ
ରଖିବାକୁ ପତି ପୁତ୍ର ବଂଶର ଗରିମା,
ସେମାନେ ଦେବାକୁ ଶକ୍ତ ଶତ୍ରୁସିଂହାସନେ
ଲୋଡ଼ା ହେଲେ ପଣ୍ୟରୂପେ ଯବନ-ବଜାରେ !
ପିତା ପତି ପୁତ୍ର ହେଲେ ରମଣୀବିକ୍ରେତା !
ଏ ପାପର ଫଳ ଶତ୍ରୁ ଭୋଗିବ ମୁକର,
ଅଚିରେ ଅବା ଆପଣାର ବଂଶ ଏ ଅନଳେ
ଦଗ୍ଧ ହୋଇ ଦିନେ ନଷ୍ଟେଁ ହେବେ ଛାରଖାର
ଭସ୍ମମୟ ! ଏ କପଟ, ଏ ବିଳାସ ଦିନେ
ଧରିବ ସଂହାରମୂର୍ତ୍ତି ! ଏ କି ରାଜୋଚିତ ?—
ସତୀତ୍ୱମର୍ଯ୍ୟାଦା ସାରି ସାଧେ ନିଜ ସ୍ୱାର୍ଥ !
ଏ ପାପେ କି ସିଂହାସନ ନ ଟଳିବ ଦିନେ ?
କିଣିଛୁ କି ଶତ୍ରୁ ଭୂମି ଚିରକାଳପାଇଁ ?
ଚଞ୍ଚଳା ସୌଭାଗ୍ୟଲକ୍ଷ୍ମୀ ହେବେ କି ଅଚଳା ?
ସେ ବେଳେ ତ ଅକନ୍ଧଙ୍କ ବଂଶ ହେବ ଲୋଡ଼ା
ସ୍ଥାପିବାକୁ ରାଜପୁତବଂଶ ଏ ଭାରତେ ।

ନରାଧମ ଭଗବାନ ଦେଲା ଯେ କଳଙ୍କ
ପହ୍ନିଲେ, ଗ୍ରାସିଛି ତାହା ସମଗ୍ର ଏ ଜାତି,
ତବ ବିନା, ହେ ପ୍ରତାପ, କିଏ ଅଛି ଆଜି ?
ରଖି ଆଜି ବଂଶଶିଖା; ତୁମ୍ଭେ ତ ପାବକ;
ହୁଅ ହେ ପାବକ ପରି ଆଜି ଊର୍ଦ୍ଧ୍ୱ ଶିଖା;
ନ ଲୋଡ଼ ସଲିଳଧର୍ମ—ନ ସରୁ ମହତ୍ତ୍ୱ ।
ସେ ମହତ୍ତ୍ୱ କାଳେ ହେବ ଚିରସମୁଜ୍ଜ୍ୱଳ,
ବିସ୍ମୟେ ଦେଖିବ ବିଶ୍ୱ ଏ ଅପୂର୍ବ କୀର୍ତ୍ତି ।

କିଅବା ପାର୍ଥିବ ଲୋଭ, ଲାଭ, ପ୍ରଲୋଭନ
ଭୁଲାଇବ ତବ ମନ, ହେ ବୀର ପ୍ରତାପ !
ରାଜୋଚିତ ପରିଚ୍ଛଦ ବସନ ଭୂଷଣ
ଅଶନ ଆସନ ସବୁ ଚିତୋରର ହିତେ
ତେଜିଛ, ନେଇଛ ଦୈନ୍ୟ ଆପେ ପ୍ରାଣ ଭରି
କି ମହାଗୌରବରୂପେ ନିଜ ମସ୍ତକରେ !
କୁଶାସନ, କୁଶଶଯ୍ୟା, ବନ୍ୟ ପର୍ଣ୍ଣପୁଟେ
ଚଳେ ଯାର ନିତ୍ୟ କାର୍ଯ୍ୟ, ସେ ପ୍ରତାପ କିପାଁ
ପର ପାଶେ ନତ କରେ ଆଜି ନିଜ ମଥା !
ଏ ରହସ୍ୟ, ଏ ଜଟିଳ ପ୍ରଶ୍ନର ସମାଧା
କେ କରିବ କାହିଁ ମୋତେ ଦିଶୁ ନାହିଁ ପାଶେ !
ବାପ୍ପା ରାଓ ବାଦଲର ଯୋଗ୍ୟ ବଂଶଧର,
ହେ ସମରସିଂହ-କୁଳ-ଅମର-ନନ୍ଦନ,

କି କହିବି ମର୍ମବ୍ୟଥା ? ତୁମ୍ଭେ ମହାପ୍ରାଣ,
ଦେଖାଇ ଯାବତ ପିଣ୍ଡେ ବହେ ପ୍ରାଣବାୟୁ
ସେ ମହାପ୍ରାଣତା; ରହୁ କାଳେ କାଳେ ଭବେ
ଚିତୋରର—ଭାରତର ଅକ୍ଷୟ ଗୌରବ;
ତବ ଶୌର୍ଯ୍ୟପୁତ ଏହୁ ଗିରି ଆରାବଳୀ
ଘୋଷୁ ତବ ଆତ୍ମୋତ୍ସର୍ଗ ଅତୁଳ ପ୍ରଭାବ
କରି ଏ ଭାରତ ଭବେ ଅଜେୟ ଅଭୟ ।



# ପାଷାଣୀ

[ ୧ ]

ଦୂରଦେଶେ ଯାଇଥିଲି ବୁଲି ବୁଲି ମୁହିଁ
କାହୁଁ ଆସି ହେ ସୁନ୍ଦର, ଦେଖି ଦେଲୁ ତୁହି ?
ମୁଖେ ମୃଦୁ ମନ୍ଦହାସ୍ୟ ଉଛଳ ଗୃହାଣୀ
ଦେଖି ଆଶା ଥିଲା କାନେ ଶୁଣିବ ତୋ ବାଣୀ;

ନୟନର ଆଭା ଦେଖି ଭାଉଥିଲି ମନେ,
ଏ ଯାର ନୟନ ପୂର୍ଣ୍ଣ ତା ପ୍ରାଣ କି ଧନେ !
ଦେବଲୋକଦ୍ୟୁତି ଦେଖି ବଦନମଣ୍ଡଳେ
ଭାବୁଥିଲି ଦେବ ସଙ୍ଗି ଅଜ୍ଞ କର୍ମଫଳେ !

ଦୂରୁ ଦେଖି ମନୋହର ତୋ ଲାବଣ୍ୟ ଠାଣି
ପୋଷିଥିଲି ଆଶା ପ୍ରାଣେ ଦେବୁ ଶାନ୍ତ ଆଣି;
ସବୁ ଶୋଭା ଥିଲା, ମୁଖେ ନ ଥିଲା ତ ଭାଷା,
ତାଳରୁ ସଙ୍ଗୀତ ଶେଷେ ଥିଲା ମଧ୍ୟ ଆଶା ।

ମୋ ଅଙ୍କକୁ ଜଳଜଳ ରହିଲୁ ତୁ ଚାହିଁ,
ପାଷାଣୀ ତୁ ପଦେ କଥା କହିଲୁ ତ ନାହିଁ !

[ ୨ ]

ସତ ସତ୍ୟେ ନୋହୁ ତୁହି ଜନ୍ମପାଷାଣୀ,
ଚାହିଁଥିଲୁ କେତେ କଣ୍ଠେ ବୀଣାଜିଣା ବାଣୀ !
ପାଶେ ଚୂଡ଼ାଳେ ବସି ପିକ ତୋର ସ୍ୱର
ଶୁଣୁଥିଲୁ ସବୁବେଳେ ରହି ଉଜାଗର;
ବାଃବ ବାଟେଇ ଭୁଲି ଘର ଯିବା କଥା
ତୋ ନିକୁଞ୍ଜେ ଦେଇ କାନ ହରୁଥିଲୁ ବ୍ୟଥା;
ତନୁର ଲାବଣ୍ୟ ସଙ୍ଗେ ବଚନମାଧୁରୀ
ମିଶି ମଧୁରିମା ମର୍ମେ ମର୍ମେ ଥିଲା ପୂରି;
ଦୂରଦେଶୁ କାହୁଁ ଅସି କେତେ ଅଭ୍ୟଜନ
ତୋ କ୍ଷେତ୍ରେ ପଶାଉଥିଲେ ନିଜ ନେତ୍ର ମନ !
ତୋ ଶୋଭାସମ୍ପଦ କର ଜୀବନସଙ୍ଗୀନି
ଯାଉଥିଲେ ନିଜ ଦେଶେ ତୋତେ ଭାଳି ଭାଳି !
ଯେ ଧନୁ ଯୌବନ ତୋର ପରଶିଲା ତନୁ,
ତୁ ହେଲୁ ପାଷାଣୀ, ଏହା ନ ଯିବ ମୋ ମନୁ !



# କବିର କୃତଜ୍ଞତା

କେହୁ ଲେଖି ନାହିଁ ଅମର ସଙ୍ଗୀତେ
କେବେହେଁ ତୋହର ନାମ,
ନୋହୁ ତୁହି କିଛୁ ପୁରାଣ ତୀର୍ଥ
ଅଥବା ମୋକ୍ଷଧାମ,
ସୌନ୍ଦର୍ଯ୍ୟଭରା ଶୋକପାସୋରା
ତୁହି ମୋ ହୀରକମଣି,
ତୋହର ମଞ୍ଜୁଳ ଶ୍ୟାମଳ କୁଞ୍ଜେ
ଲଭିଛୁ ନୟନମଣି ।
ତୋହର କୋଳରେ ଖେଳିଥିଲି ସେହୁ
ଶୈଶବେ ତାର ଖେଳ,
ମୁକ୍ତ କୌମାରେ ସ୍ୱଚ୍ଛନ୍ଦମନା ସତରେ
କରୁଥିଲି ସଖୀ ମେଳ,
ନବଯୌବନ ନବୀନ ପରଶେ
ଗୁଞ୍ଜିଲି ମଧୁର ଗୁଞ୍ଜି,

ଯେଦିନେ ଅନାଇଲ ସୃଜିଲ ସ୍ୱର୍ଗ
ମଧୁର ଅମିୟ ଢାଳି,
ତାହାର ଭୂଙ୍ଗିରେ ଫୁଟିଲା ପଦ୍ମ
ଡାକିଲା କୋକିଳ ଡାଳେ,
ନବଜାଗରଣ ମନ୍ତ୍ର ଶୁଣିଲା
ଅଷାଢ଼ ଜଳଦମାଳେ,
ଦାଉ ଦାଉ ହୋଇ ଜଳିଲା ହର୍ଷେ
କୁମାରପୂର୍ଣ୍ଣିମା ରାତି,
କଦମ୍ବ ମୂଳରେ ବଂଶୀ ବାଜିଲା
କମ୍ପିଲା ଦୂରରୁ ଛାତି,
ଘୂଲୁ ଘୂଲୁ ହୋଇ ବହିଲା ବାଆ
ଗାଇଲା ତାହାର ନାମ,
ଲକ୍ଷ ଯୋଜନ ବକ୍ଷ ଭେଦିଲା
ପରଶିଲା ଶତ ପ୍ରାଣ,
ତାର ଯୌବନଶୋଭାପ୍ରବାହ ଛୁଟିଲା
ତୁଟିଲା ଦମ୍ଭ ମୋର,
ରକ୍ତେ ରକ୍ତେ ଗୁଞ୍ଜିଲା କ୍ଷଣକେ
ବିଷମ ବିଦ୍ରୋହ ଘୋର,
ସୁସ୍ଥ ସବଳ ଶାନ୍ତ ଜୀବନେ
ଭାଜିଲା ସକଳ ଶାନ୍ତି,
ଦିବସ ଯାମିନୀ ଅବୋର୍ ବହିଲା
ଉନ୍ମାଦଭରା ଭ୍ରାନ୍ତି ।

### କବିର କୃତଜ୍ଞତା

ଢୁଳୁଢୁଳୁ ଆଖି ଶିଥିଳ ଚରଣ
ସ୍ୱପ୍ନବିଭୋର ପ୍ରାଣେ
ଯାଇଥିଲି ପରି ତୋହର ସନ୍ନିଧେ
ତାହାରି ନୂପୁର ଧ୍ୱାନେ,
ଶୁଭ ଶଙ୍ଖଚିଲ ଉଦଉଦଳିଆ
ଗାଇଲେ ତା ନାମ ବାଟେ;
ହସି ହସି ପାଦ ଘଷୁଥିଲେ ପଲ୍ଲୀ-
ସୁକୁମାରୀ ତୋର ଘାଟେ,
ରଜନୀ ନୟନେ ସଖୀସମ୍ଭାଷଣେ
କିଣିନେଲା ମନ ବଳେ,
ହଲି ହଲି ଅସି ହସ୍ତ ବାନ୍ଧିଲା
କୁସୁମ ଦୁର୍ବାଦଳେ,
ଝମଝମ କରି ଝୁଣ୍ଟିଆ ବଜାଇ
ଝଲସାଇ ଦେଲା ଆଖି,
ପଲକ ଭିତରେ ଅନ୍ତରେ ପଶି
ଅମ୍ଭାରେ ଗଲା ଲଖି,
ଗୋଟି ଗୋଟି କରି ଫିଟାଇ ଦେଲା ସେ
ଜୀବନବନ୍ଧନଡୋରି,
ସଂଗ୍ରାମ ସଙ୍ଗେ ସନ୍ଧି କରିଲା
ଛୁଟିଲା ବିଦ୍ରୋହ ଘୋର,
ପାଷାଣର ଅଙ୍ଗେ ବୁହାଇ ଦେଲା ସେ
ସ୍ନେହକରୁଣାଧାର,

କୋମଳ ଅଙ୍ଗୁଳି ସଙ୍କେତେ ଆଣିଲ
କୁଟୀରେ ସରଗ ତାରା,
ମର୍ତ୍ତ୍ୟର ଅଙ୍ଗେ ସ୍ୱର୍ଗ ଛନ୍ଦଲ
ଜୀବନ ସଙ୍ଗରେ ମୃତ୍ୟୁ,
ପ୍ରଣୟପ୍ରବାହେ ଉଜାଣି ଉଠି ସେ
ବାନ୍ଧିଲ ଶୂନ୍ୟସେତୁ,
ରଖିଲ ମୋ କରେ ନବୀନ ବୀଣା ସେ
ଖଞ୍ଜିଦେଲ ବେଗେ ତାର,
ଚମ୍ପକ ଅଙ୍ଗୁଳି ଚଳାଇ ଆଣିଲ
ମୋହନ ମୃଦୁ ଝଙ୍କାର;
ସେହି ଝଙ୍କାରେ ମୁଁ ତନ୍ମୟ ପ୍ରାଣେ
ରହିଛି ତା ମୁଖେ ଚାହିଁ,
ପଦେ ପଦେ ଗୀତ ମନେ ରହିଯାଏ,
ତାହା ସିନା ଧଏ ଗାଇ ।



## ମନେ ରଖ

ଚାଲିଯିବ ଯେବେ          ଏହି ଦେଶ ଛାଡ଼ି
ମନେ ରଖ ବନ୍ଧୁ ମୋତେ,
ଚାଲିଯିବ ଯେବେ          ସେ ନୀରବ ଦେଶେ
ଭାସି ଭାସି କାହିଁ ସ୍ରୋତେ,
ରଖି ନ ପାରିବ          ପ୍ରେମପୂର୍ଣ୍ଣ ପ୍ରାଣେ
ଆଉ ମୋର ହାତ ଧରି,
ଥୋକେ ଚାଲି ପୁଣି          ଚାହିଁ ନ ପାରିବ
ହଟି ତବ ଧୃତ ଭରି ।
ଭବିଷ୍ୟ ଗାଇଙ୍କେ          ବସା ବାନ୍ଧିବାକୁ
କେତେ ପାଞ୍ଚ ପାଞ୍ଚି ମନେ
ଆଉ ଯେବେ ମୋତେ          କହି ନ ପାରିବ
ରଖିବ ମୋ କଥା ମନେ ।

ମନେ ରଖ ମୋତେ          ଏତିକି ମାଗୁଣି
ଯାହା ପଛେ  ସବୁ ସୁଖ,
ଯାଉ ପଛେ ଦୂରେ          ମଧୁର ଆଳାପ
ତବ ବିମୋହନ ରୂପ ।
ଭୁଲ୍ ଯେବେ ମୋତେ          ସୁମରିବ ପୁଣି
ନ ଘେନିବ ମନେ  ବ୍ୟଥା,
ଭୁଲ୍‌ଯାଅ ଯେବେ          ନାହିଁ ତବ ଦୋଷ
ସେ ମୋ କପାଳର  ଲିଖା ।
ମୋ ଜୀବନ ଦୋଷ          ଦୁରିତ ଦୀନତା
ଯେବେ ପଡ଼ିଯିବ ମନେ,
ହସି ହସି ବନ୍ଧୁ,          ଭୁଲ୍‌ଯାଅ ମୋତେ
ଲଭ ସ୍ନେହ ସୁଖ ଜୀବନେ ।
ମୋର ସ୍ମୃତି ଯେବେ          ଆଣେ ପ୍ରାଣେ କଷ୍ଟ
ପକାଅ ସେ ସ୍ମୃତି  ପୋଛି,
ସ୍ମୃତି ଯଦି ମୋର          ସନ୍ତାପକାରୀ,
ଫିଙ୍ଗ ସେ ସ୍ମୃତି ନ ଶୋଚି ।



# କବିତାର ପୁରସ୍କାର

କିଶୋର କିଶୋରୀକୁଳ    କି ଶୋଭା ସମ୍ପଦ ଫୁଲ
କରିଅଛ ନିଜର ହୃଦୟେ !
ତେଣୁ ମୋ କବିତା-ପକ୍ଷୀ    ମନସୁଖେ ହସି ହସି
ତବ ପାଶେ ଗମଇ ନିର୍ଭୟେ ।
କିଶୋର କିଶୋରୀକୁଳ    ତୁମେ ମୋ କବିତା ମୂଳ
ବୃନ୍ତ, ଅଛି ତୁମର ହୃଦୟ;
କବିର କାମନା ସ୍ୱପ୍ନ    ନିଅ ବକ୍ଷେ କରି ଯତ୍ନ,
ଦିଅ ତାକୁ ଅଭୟ ଆଶ୍ରୟ ।
ଦର୍ଶନ ତର୍କର ଦଣ୍ଡ    ଧଦ୍ ବାଙ୍କ ଖଣ୍ଡ ଖଣ୍ଡ
କରୁଥାନ୍ତୁ କବିତାବପୁର;
ଏଟ ର୍ମେ ମର୍ମେ    ଫୁଲକେ କବିତା ଭ୍ରମେ
ରସ ଗନ୍ଧ ଲଭିଇ ସଞ୍ଚାର ।
କି କବିତା ମୂଲ୍ୟ,—    ବାଳକର ଧୂଳିଖେଳ
ପାଗଳର ପ୍ରଳାପ, ସ୍ୱପନ,

ତବ ସ୍ନିଗ୍ଧ ମୁଗ୍ଧ ହିଆ          କବିତାର ଚିରପ୍ରିୟା
ସ୍ନେହ ଅନୁଭୂତିର ସଦନ ।
ତୁମରି ରୂପର ସରେ          କବିତା ବିହଙ୍ଗ ଖେଳେ
ରୂପେ ରୂପ ପଢ଼େ ସିନା ଧରା;
ହୃଦୟ ତୁମରି ରାଜ୍ୟ,          ତହିଁ କବିତାର କାର୍ଯ୍ୟ,
ବାଜେ ତହିଁ ବୀନ ପଥହରା ।
କେଉଁ ସୃଷ୍ଟି ଆରମ୍ଭରୁ          ବାଣୀ କୋଠଭଣ୍ଡାରରୁ
କେତେ ରତ୍ନ କବୀନ୍ଦ୍ର ଜଗତେ
ଭାବ ସଙ୍ଗୀତ ସମ୍ଭାର          ଆଣିଛନ୍ତି ଭାର ଭାର
ଭେଟିଛନ୍ତି ତବ ପଦପ୍ରାନ୍ତେ !
ତରୁଣ ତରୁଣୀ ତବ          ହୃଦ ସ୍ୱଚ୍ଛ ଅଭିନବ
ବେଗେ ପଢ଼େ ସୌନ୍ଦର୍ଯ୍ୟର ଛାୟା ,
ତବ ଯୌବନଫଳକେ          କବି କେତେ ମୂର୍ତ୍ତି ଆଙ୍କେ
ବୁଣେ କେତେ ମୋହଜାଲ ମାୟା !
କବିତାର ତୃପ୍ତି ମନେ          ଅନାବିଳ ଯଉବନେ
କରିଅଛୁ ପୂର୍ଣ୍ଣ ଅଧିକାର,
କବିର ଏ ଅଭିମାନ, —          ତବ ହୃଦେ ଲଭେ ସ୍ଥାନ,
କବିତାର ଜଇ ପୁରସ୍କାର ।



## ମୋ ମରଣଟା ହେଉ ଅଚ୍ଛା ଭଲ

ଅଛା ... କାଲ୍ ହେଉ ଯିବ ଅମ୍ଭା ଗୁଡ଼,
ଫନୁ ଦନୁ ବୟସ ଭାର ଦେଖେଁ ଅସୁଛୁ ମାଡ଼;
ଜନ୍ମ ଲଭି ମରଣକୁ ନାହିଁ ମୋ ମନେ ଡର,
ଏତକ ଇଚ୍ଛା ମୋ ମରଣଟା ହେଉ ଅଚ୍ଛା ଭଲ !

ସେହି ମରଣ ଭଲ ମରଣ ମୋ ମନକୁ ଅସେ,
ଯୁଝୁଁ ଯୁଝୁଁ ପଡ଼ିଯିବ ଯମରାଜା ପାଶେ,
ଝଷ୍ଟ ରକ୍ତ ସରୁ ସରୁ ଛାଡ଼ିଯିବ ପ୍ରାଣ,
ସେହି ମରଣ ପାଇବା ଲାଗି ମୋର ମନେ ଧ୍ୟାନ !

ସେହି ମରଣ ପାଇଲେ ମନେ ନ ରହିବ କ୍ଳେଶ,
ସେହି ମରଣ ପାଇଲେ ସୁଖେ ହେବ ପ୍ରାଣ ଶେଷ,
ସେହି ମରଣ ପାଇଲେ କେହି ହେବ ନାହିଁ ଦାହି,
... ...ଣ ପାଇବା ଲାଗି ବସିଅଛୁ ଚାହିଁ ।

...ଘ୍ର ସିଂହ ଲଭିଥାଏ ବନେ,
ମରଣ ... ଭୂମେ ମିଳେ ସୈନ୍ୟଗଣେ,

ସେହି ମରଣେ ସାଧୁ ଭକ୍ତ ପାଇଥାଏ ମୋକ୍ଷ,
ସେହି ମରଣ ନେବାଲାଗି ମେଲି ଦେବି ବକ୍ଷ ।

ଜନ୍ମ ସଙ୍ଗେ ମରଣଟା ରହିଅଛି ଛନ୍ଦା,
ମୃତ୍ୟୁଦ୍ୱାରେ ଜୀବନଟା ଚିରକାଳ ବନ୍ଧା,
ସେଥିପାଇଁ ମରଣକୁ ନାହିଁ କେବେ ଭୟ,
ବୀର ପରି ମଲେ ମୋର ହେବ ମୃତ୍ୟୁଞ୍ଜୟ ।

କେ କହୁଛି ମରଣଟା ଜୀବନର ଶେଷ ?
ହେଲେ ହେଉ, ସେଥିଲାଗି ନାହିଁ ଭୟ ଲେଶ;
ଖଟି ଖଟି ହସି ହସି ଚାଲିଯାଉ ପ୍ରାଣ.
ସେତିକରେ ପୂର୍ଣ୍ଣ ହେବ ମୋର ମନସ୍କାମ ।

ପଶୁ ମୃତ୍ୟୁ କେବେ ମୋତେ ଲାଗେ ନାହିଁ ଭଲ,
ବୀରମୃତ୍ୟୁ ଗଳ୍ପ ଶୁଣି ନାଚେ ବକ୍ଷ ମୋର,
ବୀର ପରି ମରିବାର ସୁଖ ଯେହୁ ଜାଣେ,
ସ୍ୱର୍ଗସୁଖ ସେହି ଏକା ଭୋଗେ ଧରାଧାମେ ।

ମଲ୍ଲ ମୃତ୍ୟୁ ମୋ କପାଳେ ରଖ ନାହିଁ ହର,
ଡମା ମୃତ୍ୟୁରେ ଶୌର୍ଯ୍ୟ ବୀର୍ଯ୍ୟ ଦଅ ଦଅ ଭରି,
ଶସ୍ତ୍ର ଖଣ୍ଡା ବାଜୁ ବଜ୍ର ଅଛୁ ଉର୍ଦ୍ଧ୍ୱେ ରୁନ୍ଧି,
ଏତିକ ଇଚ୍ଛା ପରୁ ମରଣ ମୋତେ ଦ [illegible] ।



## ଟିପ୍ପଣୀ

### ଅଭାଗିନୀ ( ୨୬ ପୃଷ୍ଠା )

ଯତିପାତ—ପ୍ରଥ ଧାଡ଼ିର ପ୍ରଥମ ଦୁଇ ଅକ୍ଷର ପରେ ଟିକିଏ ବିରାମ ଦେଇ ପଢ଼ିବାକୁ ହେବ ।

### ତ୍ରିବେଣୀତଟେ ( ୩୩ ପୃଷ୍ଠା )

କଲିକତା ଉତ୍ତରବର୍ତ୍ତୀ ତୀର୍ଥସ୍ଥାନ । ଏ ସ୍ଥାନରେ 'ମୁକୁନ୍ଦଘାଟ' ପ୍ରଶ୍ନଉରୁ ମୁକୁନ୍ଦଦେବଙ୍କ ରାଜ୍ୟଜୟର ନିଦର୍ଶନ ମିଳେ ।

୩୩ ପୃଷ୍ଠା ପ୍ରଥମ ଧାଡ଼ି :—

ଭାଇ —ବନ୍ଧୁ ଅଧ୍ୟାପକ ଶ୍ରୀଯୁକ୍ତ କୃତ୍ତିବାସ ସାମନ୍ତରାୟ ।

### ରାଙ୍କାଙ୍କ୍ଷା ( ୪୪ ପୃଷ୍ଠା )

ଗତ ଜର୍ମାନଯୁଦ୍ଧ ସମୟରେ ଲିଖିତ ।

### ବିରହେ ( ୬୧ ପୃଷ୍ଠା )

ଅନୁବାଦ—Phoebe Cary

### ସୈନିକର ଶେଷ ଚିନ୍ତା ( ୬୩ ପୃଷ୍ଠା )

୧୯୪୧ ମସିହା ଅକ୍ଟୋବର ୫ ତାରିଖ Statesman କାଗଜରେ How a Russian faced desath—A peasant's ist

thoughts of his wife ନାମରେ ଜଣେ ସୁଛ—ଡାକ୍ତରଙ୍କଦ୍ୱାରା ଲିପିବଦ୍ଧ ଗୋଟିଏ ରୁଷଦେଶୀୟ ମୁମୂର୍ଷୁ କୃଷକ ସୈନିକର ଖଣ୍ଡିଏ କ୍ଷୁଦ୍ର ପତ୍ର ବାହାରିଥିଲା । ସେହି ପତ୍ରଖଣ୍ଡି ଏ ପଦ୍ୟର ମୂଳଭିତ୍ତି ।

## ଖୋରଧା ପ୍ରଥମ ଦର୍ଶନେ ( ୭୨ ପୃଷ୍ଠା )

ଆଜିକାଲିର ଖୋରଧା ସହରର ଏକ କୋଶ ଦକ୍ଷିଣରେ ବରୁଣେଇ ପାହାଡ଼ ତଳେ ପ୍ରାଚୀନ ଖୋରଧା ଗଡ଼ର ଶେଷ ଚିହ୍ନସବୁ ରହିଅଛି । ସେକାଳର ଅନେକଗୁଡ଼ିଏ ମଠ ଓ ରାଜନଅରର ଧ୍ୱଂସାବଶେଷ ଓଡ଼ିଶାର ସ୍ୱର୍ଣ୍ଣିମ ଯୁଗର ଦର୍ଶକର ଚକ୍ଷୁ ଦର୍ଶକର ଆଖି ଆଗରେ ଦେଖାଇଦିଏ ।

## ନାମକରଣ ( ୭୬ ପୃଷ୍ଠା )

ଗୋଟିଏ ଜର୍ମାନ କବିତାର ମର୍ମାନୁବାଦ ।

## ନାଉରୀଗୀତ ( ୮୭ ପୃଷ୍ଠା )

ଗୋଟିଏ ଇଂରାଜୀ କବିତାର ଅନୁବାଦ ।

## ପୃଥ୍ୱୀରାଜଙ୍କ ପତ୍ର ( ୯୨ ପୃଷ୍ଠା )

ପୃଥ୍ୱୀରାଜ ବିକାନୀରର ଅଧିପତିଙ୍କ କନିଷ୍ଠ ଭ୍ରାତା । ଇଚ୍ଛା ବିରୁଦ୍ଧରେ ଅନନ୍ୟୋପାୟ ହୋଇ ତାଙ୍କୁ ମାଡ଼ୱାର-ଅଧିପତି ମାଲଦେବଙ୍କ ଦୃଷ୍ଟାନ୍ତର ଅନୁକରଣ କରି ଆକବରଙ୍କ ଅଧୀନତା ସ୍ୱୀକାର କରିବାକୁ ପଡ଼ିଥିଲା । ପୃଥ୍ୱୀରାଜ ସେକାଳର ଜଣେ ଅସାଧାରଣ ବୀର ଓ ସୁକବି ବୋଲି ପ୍ରସିଦ୍ଧି ଲାଭ କରିଥିଲେ । ପ୍ରତାପ ନାନା ବିପଦ ଭିତରେ ... ଥାଇ ସୁଦ୍ଧା ... କନ୍ୟାର ଖାଦ୍ୟ ପିଷ୍ଟକଖଣ୍ଡ ବନ୍ୟ ବିଡାଳ ... ରୁ ନେବାପର ଅତିଶୟ ଅଧୀର ହୋଇ ଆକବରଙ୍କ ନିକଟକୁ ଶରଣ ... କରି ପତ୍ର ଲେଖିଥିଲେ, ତାହା ଏକାବେଳକେ ତାଙ୍କ ସ୍ୱଭାବବିରୁଦ୍ଧ କାର୍ଯ୍ୟ ବୋଲି ବୋଧ ହୁଏ । ଏ ପତ୍ରପ୍ରାପ୍ତିରେ ଆକବରଙ୍କ ରାଜ୍ୟର ଚତୁର୍ଦ୍ଦିଗରେ ଆନନ୍ଦ

ଉତ୍ସବ ଲଗିଲା । ବୀରପୁରୁଷ ସୁଜବ ପୃଥ୍ୱୀରାଜ ଏ ସମ୍ବାଦରେ ମର୍ମାହତ ହୋଇ ପ୍ରତାପଙ୍କୁ କବତାକାରରେ ଖଣ୍ଡିଏ ପତ୍ର ଲେଖିଥିଲେ ।

୧୪ ପୃଷ୍ଠା ୨୦ ଶ ଧାଡ଼ି, ବୃତ୍ତମାଳ—Rings । ଅର୍ଗଳ Bolts । ପ୍ରଭୁଭକ୍ତ ଅସଭ୍ୟ ଭିଲମାନେ ଏ ଦୁର୍ଦ୍ଦିନରେ ପ୍ରତାପଙ୍କର ପରମ ସହାୟ ହୋଇ ରାଜପୁତ୍ର ଓ ରାଜକନ୍ୟାମାନଙ୍କୁ ହିଂସ୍ରଜନ୍ତୁମାନଙ୍କ ଗ୍ରାସରୁ ରକ୍ଷା କରିବା ସକାଶେ ଟୋକେଇରେ ପୂରାଇ ବଉଡ଼ରେ ଏହି 'ବୃତ୍ତ' ଓ 'ଅର୍ଗଳ' ମାନଙ୍କରେ ଟାଙ୍ଗି ରଖୁଥିଲେ । ଆଜି ପର୍ଯ୍ୟନ୍ତ ମଧ ଏହି ସବୁ ବୃତ୍ତ ଓ ଅର୍ଗଳ ସେହି ବୃକ୍ଷମାନଙ୍କରେ ବଲମ୍ବିତ ହୋଇ ମହାପ୍ରାଣ ପ୍ରତାପଙ୍କ ଅଲୌକିକ ଆତ୍ମୋତ୍ସର୍ଗର ପରିଚୟ ଦେଉଅଛି ।

୧୫ ପୃଷ୍ଠା ୧୫ଶ ଧାଡ଼ି, ଘାଟମୁଣ୍ଡେ ସୁପ୍ରସିଦ୍ଧ ହଲଦୀଘାଟ ଯୁଦ୍ଧ ।

୧୯ ପୃଷ୍ଠା ପ୍ରଥମ ଧାଡ଼ି, ନରାଧମ ଭଗବାନ— ଅମ୍ବରରାଜ ଭଗବାନ ଦାସ ରାଜପୁତମାନଙ୍କ ମଧରେ ସର୍ବପ୍ରଥମେ ଯବନକୁ କନ୍ୟା ପ୍ରଦାନ କରିଥିଲେ । ମୋଗଲ ସମ୍ରାଟ ହୁମାୟୁନ ତାଙ୍କର ଜାମାତା ଓ ଆକବର ଦୌହିତ୍ର ।

୧୯ ପୃଷ୍ଠା ୧୨ଶ ଧାଡ଼ି, ଚିତୋର ଉଦ୍ଧତେ—ଯେତେଦିନ ଚିତୋର ନଗରୀକୁ ପୂର୍ବଗୌରବରେ ପ୍ରତିଷ୍ଠାପିତ କରି ନ ପାରିବେ, ସେତେଦିନ ପ୍ରତାପ ଓ ତାଙ୍କ ବଂଶଧରମାନେ ସର୍ବବଧ ବଳାସଦ୍ରବ୍ୟ ପରିହାର କରିବାର ପ୍ରତିଜ୍ଞା କରିଥିଲେ ।



## ପଦ୍ମପାଖୁଡ଼ା ଲେଖକଙ୍କ ଲିଖିତ

### ଅନ୍ୟାନ୍ୟ ପୁସ୍ତକ :—

| | | |
|---|---|---|
| ଗୋଲାପ ଗୁଚ୍ଛ | ( ସଚିତ୍ର ଖଣ୍ଡ କବିତା ପୁସ୍ତକ ) | ଟ ୦ ୴ |
| ସୁନାର ଦେଶ | (ସଚିତ୍ର ଶିଶୁରଞ୍ଜନ କବିତା ଗ୍ରନ୍ଥ) | ଟ ୦ । |
| ମହାତ୍ମା ଗାନ୍ଧୀ | ( ସଚିତ୍ର ଜୀବନଚରିତ ) | ଟ ୦ । |
| ମାର୍ଟିନ ଲୁଥର | ( ସଚିତ୍ର ଜୀବନଚରିତ ) | ଟ ୦ ।/୨ |
| ଫକୀରମୋହନ | ( ସଚିତ୍ର ଜୀବନଚରିତ ) | ଟ ୦ ୳✓ |
| ନେପୋଲିଅନ | ( ସଚିତ୍ର ଜୀବନଚରିତ ) | ଯନ୍ତ୍ରସ୍ଥ |
| ଯିଶୁ | ( ସଚିତ୍ର ଜୀବନଚରିତ ) | ଯନ୍ତ୍ରସ୍ଥ |
| କ୍ଷଣିକା | ( ସଚିତ୍ର କବିତା ଗ୍ରନ୍ଥ ) | ଯନ୍ତ୍ରସ୍ଥ |



Printed by M. Kar, The Utkal Sahitya Press, Cuttack.